# ଇନ୍ଦ୍ରପୁରୀରେ ଚହଲ

ଲେଖକ :

ଶ୍ରୀ ବାବାଜୀ ଚରଣ ଦାସ

ପ୍ରକାଶକ :

ଗୁରୁଜୀ ବୁକ୍‌ଷ୍ଟଲ୍

ଝାଞ୍ଜିରୀମଙ୍ଗଳା, କଟକ-୯

# ଇନ୍ଦ୍ରପୁରୀରେ ଚହଳ

ଲେଖକ :

ଶ୍ରୀ ବାବାଜୀ ଚରଣ ଦାସ

ପ୍ରକାଶକ :

ଗୁରୁଜୀ ବୁକ୍‌ଷ୍ଟଲ
ଝାଞ୍ଜିରିମଙ୍ଗଳା, କଟକ-୯

ପ୍ରଥମ ପ୍ରକାଶ :

୧୯୮୭

ପ୍ରଚ୍ଛଦପଟ :
ସୁନାମଣି ସାମଲ

ମୁଦ୍ରଣ :

ଗୁରୁଜୀ ପ୍ରିଣ୍ଟର୍ସ
ଝାଞ୍ଜିରିମଙ୍ଗଳା, କଟକ-୯

ମୂଲ୍ୟ—ଟ ୩-୦୦ ମାତ୍ର

# ଇନ୍ଦ୍ରପୁରୀରେ ଚହଲ

ବହୁଦିନ ପରେ ସନ୍ଧ୍ୟା ବେଳଟାରେ ଖୁବ୍ ଜୋରରେ ଅସରାଏ ବର୍ଷା ହୋଇ ଛାଡ଼ି ଯାଇଥାଏ । ତଥାପି ଆକାଶରେ ମେଘ ଘୋଟି ରହିଥାଏ । କୋହଲା ପାଗ ସାଙ୍ଗକୁ ଥଣ୍ଡା ପବନ ଯୋଗୁଁ ଶୀତ ବି ହେଉଥାଏ । ବିଜୁଳି ବତୀର ଟୋପା ଆଲୁଅ ରୁବିର ପଢ଼ାଘର ସାରା ବିଛାଡ଼ି ହୋଇ ପଡ଼ିଥାଏ । କିନ୍ତୁ ଆଉ ରୁବି ଭାଇ ଭଉଣୀ ଦୁହେଁ ସେଠାରେ ବସି ଗପ ଜମେଇ ଦେଇଥା'ନ୍ତି । ହଠାତ୍ ସେମାନଙ୍କ ପୂର୍ଣ୍ଣି ଦାଦା ପଢ଼ାଘର ଭିତରକୁ ପଶି ଆସିଲେ । ଭାଇ ଭଉଣୀ ଦୁହେଁ ତାଙ୍କୁ ଦେଖି ଚୁପ୍ ହୋଇ ବସିଗଲେ । ମାତ୍ର ପୂର୍ଣ୍ଣି ବାବୁ ସେ ଦୁହିଁଙ୍କୁ ଲକ୍ଷ୍ୟ କରି ପଚାରିଲେ--

"ବିଜୁଳି ବତୀ ଜଳାଇ ଦେଇ କ'ଣ ଗପ କରିବାରେ ଲାଗି ଯାଇଛ ? ଆଜି ଆଉ ପାଠପଢ଼ା ହେବ ନାହିଁ କି ?"

—"ନାଇଁ ଦାଦା ! ଆଜି ଯୋଉ ବର୍ଷା । ସେଥିରେ ଏ ଯୋଉ ପାଗ ପଢ଼ିବାକୁ ଆମର ଜମା ଇଚ୍ଛା ହେଉ ନାହିଁ ।" କିନ୍ତୁ ହସିଲା ମୁହଁରେ ଏ କଥା କହିଲା ।

ଏହା ଶୁଣି ପୂର୍ଣ୍ଣି ବାବୁ କହିଲେ—"କିରେ, ତୁମେ କ'ଣ ଭାବୁଛ, ବର୍ଷାଦିନେ ବି ବର୍ଷା ହୁଅନ୍ତା ନାହିଁ ? ସବୁଦିନେ କ'ଣ ଖାଲି ଖରାପାଗ ହେଉଥା'ନ୍ତା ? ଦେଖୁଛ, ଏ ବର୍ଷ ଆଷାଢ଼ ଆସି ଶେଷ ହେବାକୁ ବସିଲା । ଏ ପର୍ଯ୍ୟନ୍ତ ବର୍ଷା ହୋଇ ନ ଥିଲା ବୋଲି ଚାରିଆଡ଼େ

ହା-ହାକାର ପଡ଼ ଯାଇଥିଲା । ଯୋଗକୁ ଆଜି ମୁନ୍ଦିଏ ବର୍ଷା ହୋଇଯାଇଛି ବୋଲି ସମସ୍ତଙ୍କ ମନରେ କେତେ ଆନନ୍ଦ । ସେଥିରେ ପୁଣି ତୁମେ ଦୁହେଁ ଏ କଥା କହୁଛ ?"

ଦାଣ୍ଡ ପିଣ୍ଡାରେ ବସିଥିବା ବୁଢ଼ୀ ମା' ଏସବୁ କଥା ଶୁଣି ପଢ଼ାଘର ଭିତରକୁ ପଶି ଆସିଲେ । ପାକୁଆ ପାଟିକୁ ଥରାଇ ଥରାଇ ପୂର୍ଣ୍ଣବାବୁଙ୍କୁ ଲକ୍ଷ୍ୟ କରି କହିଲେ - "ସେ କଥା କାହିଁକି କହୁଛୁ, ବାପ ! ଏ ବର୍ଷ ଆଉ ବର୍ଷା ହେବ ବୋଲି କାହାର ବିଶ୍ୱାସ ଥିଲା !···ଏତେ ଦିନକରେ ଇନ୍ଦ୍ରରାଜା ଶାନ୍ତ ହେଲେ ।"

ଏତକ କହି ବୁଢ଼ୀ ମା' କଥାର ମୋଡ଼ ବଦଳାଇ ଦେଇ ଆରମ୍ଭ କଲି—"ଏ ଯୁଗ ତ ସେଇଆ ହେଲା । ସବୁଆଡ଼େ ଅନ୍ୟାୟ ଅନୀତି ବଢ଼ି ଚାଲିଲା । କେହି ଆଉ ଦେବା ଦେବୀ ମାନିଲେ ନାହିଁ । ଠିକ୍ ସମୟରେ ବରଷା ପାଣି ଆଉ ହବ କିମିତି ?"

ବୁଢ଼ୀ ମା' ପାଟିରୁ କଥା ଛଡ଼ାଇ ନେଇ ରୁବି କହିଲା - "ବର୍ଷା ହେଉ ନ ଥିଲା ବୋଲି ତ ଆଜି ଏମିତି ଅସରାଏ ହୋଇଛି ଯେ ବିଲବାଡ଼ି ସବୁ ବୋଝେଇ ହୋଇ ଯାଇଛି ଆଉ ଚିନ୍ତା କ'ଣ ?" ବୁଢ଼ୀ ମା' କହିଲେ—"ଏ ବରଷା କ'ଣ ସେମିତି ହେଇଛି । ରାଇଜ ସାରା କେତେ ଆଡ଼େ କେତେ ଯାଗ ଯଜ୍ଞ ଭଜନ କୀର୍ତ୍ତନ ହେଲା ବୋଲି ସିନା ଇନ୍ଦ୍ରଦେବତାଙ୍କ କୋପ ଶାନ୍ତ ହେଲା । ତା' ନ ହୋଇଥିଲେ ବର୍ଷା ହୋଇଥାନ୍ତା···ନା ଏ ବର୍ଷ ଧାନ ବିହନ ବିଲକୁ ଯାଇଥା'ନ୍ତା ?"

ବୁଢ଼ୀ ମା'ଠାରୁ ଏ କଥା ଶୁଣି ରୁବି ଜିତୁ ଭାଇ ଭଉଣୀ ଦୁହେଁ ଫେଁ-ଫେଁ ହୋଇ ହସିବାରେ ଲାଗିଲେ ।

ପୂର୍ଣ୍ଣ ବାବୁ ମଧ୍ୟ ନ ହସି ରହିପାରିଲେ ନାହିଁ । ବୁଢ଼ୀ ମା' ଏହା ଦେଖି ଟିକିଏ ରାଗିଯାଇ କହିଲେ – "କ'ଣ ହେଲା । ଗଲା କାଲି ଜନମ ହୋଇ ଆଜି ପୁଣି ମୋତେ ଥଟ୍ଟା କରୁଛ । ପାଠ ପଢ଼ୁଛ କ'ଣ ଏଇଆ ଶିଖୁଛ ? ଗୁରୁ ଗୁରୁଜନ ବଡ଼ ସାନ ବାଛ ବିଚାର ନାହିଁ । ଏଇ ପାଇଁ ତ ଘୋଟିଲା ମେଘ କୁଆଡ଼େ ଉଭେଇ ଯାଉଛି ।" ଏତକ କହି ବୁଢ଼ୀ ମା' ପୂର୍ଣ୍ଣ ବାବୁଙ୍କୁ ଚାହିଁ କହିଲେ–"କରେ ପୁନଅ, ତୁଆ ଦ'ଣ୍ଟା ହସିଲେ ବୋଲି ତୁ ବି ମୋ' କଥାରେ ହସିଲୁ ।"

ପୂର୍ଣ୍ଣ ବାବୁ କହିଲେ– "ତମେ ଜାଣି ନାହଁ ବୁଢ଼ୀ ମା' । ଆଜି ମଣିଷ ଯେତେବେଳେ ଯାଇ ଜହ୍ନମାମୁଁ ରାଇଜରେ ଘରବାଡ଼ି କରି ରହିବାକୁ ଠିକ୍ କଲାଣି, ସେତେବେଳେ ଇନ୍ଦ୍ରଦେବତା ରାଗିଯିବାରୁ ବର୍ଷା ହେଉ ନାହିଁ ବୋଲି କହିଲେ ହସ ଲାଗିବ ନାହିଁ ତ ଆଉ କ'ଣ ?" ବୁଢ଼ୀ ମା' ଚଡ଼ି ଉଠି କହିଲେ– "ଆଉ କ'ଣ ବରଷା ତୁ କରାଉଛୁ ?"

ଏହି କଥା କହୁ କହୁ ବୁଢ଼ୀ ମା' ବାହାରକୁ ପଳାଇ ଯିବାକୁ ଉଠି ଠିଆ ହେଲେ । ପୂର୍ଣ୍ଣ ବାବୁ ବୁଢ଼ୀ ମା'ଙ୍କ ହାତ ଧରି ବୁଝାସୁଝା କରି ଶାନ୍ତ କରାଇଲେ । ବୁଢ଼ୀ ମା' ପୁଣି ବସିଲେ । ପୂର୍ଣ୍ଣ ବାବୁ ତାଙ୍କୁ ଲକ୍ଷ୍ୟ କରି କହିଲେ– "ଆକାଶରେ ମେଘ ଘୋଟିଲେ ଛାଏଁ ଛାଏଁ ବର୍ଷା ହୁଏ । ଇନ୍ଦ୍ରଦେବତା କିମ୍ବା ଅନ୍ୟ କେହି ବର୍ଷା କରନ୍ତି ନାହିଁ ।

ବୁଢ଼ୀ ମା' କହିଲେ – "ଏତେ ଦିନ ହେଲା ଆକାଶରେ ମେଘ ଘୋଟି ଘୋଟି ଯାଉଥିଲା । କାହିଁ ଛାଏଁ ଛାଏଁ ତ ବର୍ଷା ହେଉ ନ ଥିଲା ।"

ପୂର୍ଣ୍ଣ ବାବୁ ଏ କଥାର କିଛି ଉତ୍ତର ଦେବା ଆଗରୁ ରୁବି ପଚାରି ଦେଲା—"ଏ ବିଷୟରେ ମୁଁ ଗୋଟିଏ କଥା ଜାଣିବାକୁ ଚାହୁଁଛି, ଦାଦା ?"

ପୂର୍ଣ୍ଣ ବାବୁ କହିଲେ—"କ'ଣ କହ ।"

ଏତେବେଳକେ କୋଳାହଳମୟ ପଢ଼ା ଘରଟିରେ ନୀରବତା ବିରାଜମାନ କଲା । ବୁଢ଼ୀ ମା' ଟିକେ ଶାନ୍ତିରେ ନିଶ୍ୱାସ ମାରିଲେ ।

ରୁବି ପଚାରି ଦେଲା—"ସତରେ ଏତେ ଦିନ ହେଲା ଆକାଶରେ ମେଘ ଉଠାଉ ଥିଲେ ମଧ୍ୟ ସେଥିରୁ ବର୍ଷା ହେଉ ନଥିଲା କାହିଁକି ?"

ବର୍ଷା କାହିଁକି ହୁଏ ?

ପୂର୍ଣ୍ଣବାବୁ କହିଲେ—"ଭଲ କଥାଟିଏ ପଚାରିଲୁ ରୁବି ! ତେବେ ଶୁଣ । ତୁମ୍ଭେମାନେ ତ ବିଜ୍ଞାନ ବହିରେ ପଢ଼ିଛ, ଖରାରେ ନଈ ପୋଖରୀ ଓ ସମୁଦ୍ର ପ୍ରଭୃତିର ଜଳ ବାଷ୍ପରେ ପରିଣତ ହୋଇ ବାୟୁମଣ୍ଡଳରେ ମିଶେ । ଏହି ଜଳୀୟ ବାଷ୍ପ ଆଖିକୁ ଦିଶେ ନାହିଁ । ଏହା ବାୟୁ ମଣ୍ଡଳରେ ଉପରକୁ ଉଠି ଖେଳେଇ ହୋଇ ଥଣ୍ଡା ହୋଇଯାଏ । ସେଠାରେ ଥିବା ଧୂଳିକଣା ଦେହରେ ଏହା ଲାଗି ଘନୀଭୂତ ହୋଇ ଛୋଟ ଛୋଟ ଜଳକଣାରେ ପରିଣତ ହୁଏ । ଆକାଶରେ ଭାସି ବୁଲୁଥିବା ଏହି ଜଳକଣାଗୁଡ଼ିକୁ ଆମେ ମେଘ ବୋଲି କହୁ । ମେଘ ଆକାଶରେ ଥିବାବେଳେ ଅଧିକ ଥଣ୍ଡା ପାଇଲେ ସେହି ଛୋଟ ଛୋଟ ଜଳକଣାଗୁଡ଼ିକ ଏକାଠି ମିଶି ବଡ଼ ବଡ଼ ଜଳ ଟୋପାରେ ପରିଣତ ହୁଅନ୍ତି । ଏହି ଜଳ ଟୋପା ସବୁ ବାୟୁଠାରୁ ଓଜନିଆ ହୋଇଥିବାରୁ ବର୍ଷା ଆକାରରେ ଭୂମିରେ

ପଡ଼ନ୍ତି । ସାଧାରଣତଃ ଏହିପରି ଭାବରେ ମେଘରୁ ବର୍ଷା ହୋଇଥାଏ ।"

ଏତିକି କହି ପୂର୍ଣ୍ଣବାବୁ କହିବାର ଢଙ୍ଗ ବଦଳାଇ ଦେଇ ଆରମ୍ଭ କଲେ—"ଏଥିରୁ ଜଣାଗଲା ଯେ ମେଘ ଦେହରେ ଥିବା ଛୋଟ ଛୋଟ ଜଳକଣାଗୁଡ଼ିକ ଯଥେଷ୍ଟ ଥଣ୍ଡା ନ ପାଇଲେ ବର୍ଷା ହେବା ଭଳି ବଡ଼ ବଡ଼ ଜଳ ଟୋପାରେ ପରିଣତ ହୋଇ ପାରନ୍ତି ନାହିଁ । ଏହି କାରଣରୁ ଏଇ କେତେଦିନ ହେବ ଆକାଶରେ ମେଘ ଉଠାଉ ଥିଲେ ମଧ୍ୟ ତାହା ଆବଶ୍ୟକୀୟ ଥଣ୍ଡା ପାଇପାରୁ ନ ଥିବାରୁ ସେଥିରୁ ବର୍ଷା ହେଉ ନଥିଲା । ମାତ୍ର ଆଜି ସନ୍ଧ୍ୟାବେଳେ ଆକାଶରେ ଘୋଟିଥିବା ମେଘ ଯଥେଷ୍ଟ ଥଣ୍ଡା ତାପମାତ୍ରା ପାଇଯିବାରୁ ସେଥିରୁ ପ୍ରବଳ ବର୍ଷା ହେଲା ।"

ଏତେବେଳକେ ନୀରବତା ଭଙ୍ଗ କରି ବୁଢ଼ୀ ମା' ତାଙ୍କ ପାକୁଆ ପାଟିକୁ ଦେଖାଇ କହିଲେ—"କରେ ପୁନିଆ, ତୁ କଲେଜରେ କ ବଗିଆନ ପାଠ ପଢ଼ୁଛୁ ଯେ, ସବୁ କଥାକୁ ଫାଙ୍କି ଦଉଛୁ । ତୁ ଯେତେ ଯାହା କହିଲେ ମୁଁ କ'ଣ ମାନିବି ? ଗୁରୁଆଡ଼େ ଯାଗଯଜ୍ଞ କରି ଘିଅ ଆହୂତି ଦେଇ ନ ଥିଲେ ଇନ୍ଦ୍ର ରାଜା କ'ଣ ଶାନ୍ତ ହୋଇଥା'ନ୍ତେ ନା ଆଜି ଏମିତି ବର୍ଷା ହୋଇଥାନ୍ତା ?"

ଏ କଥା ଶୁଣି କିତୁ ବୁଢ଼ୀ ମା'ଙ୍କ ପାଟିରୁ କଥା ଛଡ଼ାଇ ନେଇ ପଚାରି ଦେଲା—"ଯଜ୍ଞରେ ଘିଅ ପୋଡ଼ା ଯାଉଥିବାରୁ ବର୍ଷା ହେବାର ସମ୍ଭାବନା ଥାଏ ବୋଲି ଆମ ସାର୍ ଥରେ କହୁଥିଲେ । ଏକଥା କ'ଣ ସତ, ଦାଦା ?"

ପୂର୍ଣ୍ଣବାବୁ କହିଲେ – "ହଁ, ଏହା ସତ । ମୁଁ ତୁମ୍ଭ-ମାନଙ୍କୁ ବର୍ତ୍ତମାନ ସେଇ କଥା କହିବାକୁ ଯାଉଥିଲି । ତୁ ଆଗରୁ ପଚାରି ଦେଲୁ ।"

ଏ କଥା ଶୁଣି ବୁଢ଼ୀ ମା' ଭାରି ଖୁସି ହୋଇଗଲେ । ତାଙ୍କୁ ଏବେ କହିବାକୁ ସୁଯୋଗ ଜୁଟିଗଲା । ସେ ହସି ହସି କହି ପକାଇଲେ – "ମୁଁ ତ ସେଇ କଥା କହୁଥିଲି, ମୋ' କଥାକୁ ଫାଙ୍କି ଦେଉଥିଲୁ କାହିଁକି ?"

ପୂର୍ଣ୍ଣ ବାବୁ ମଧ୍ୟ ହସିଲା ମୁହଁରେ ବୁଢ଼ୀ ମା'ଙ୍କୁ ଚାହିଁ କହିଲେ – "ନାଇଁ ତୁମେ ଯାହା କହୁଥିଲ, ସେ କଥା ତ ମୁଁ କହୁ ନାହିଁ ।"

କଥା ମଝିରେ ରବି ପଚାରି ଦେଲା – "ଯଜ୍ଞରେ ଘିଅ ପୋଡ଼ିଲେ କାହିଁକି ବର୍ଷା ହେବାର ସମ୍ଭାବନା ଥାଏ, ତାହା ଆମକୁ ବୁଝାଇ ଦିଅ ଦାଦା ?"



ପୂର୍ଣ୍ଣ ବାବୁ ବୁଝାଇବା ଛଳରେ ଆରମ୍ଭ କଲେ – ଯଜ୍ଞରେ ଘିଅ ପୋଡ଼ା ଯାଉଥିବାରୁ ତାହା ବାଷ୍ପରେ ପରିଣତ ହୋଇ ଛୋଟ ଛୋଟ ଘିଅ କଣିକା ଆକାରରେ ଉପରକୁ ଉଠିଯାଏ । ଆକାଶରେ ଭାସି ବୁଲୁଥିବା ମେଘର ଜଳକଣା ଗୁଡ଼ିକ ବହୁ ସଂଖ୍ୟାରେ ଏହି ଘିଅ କଣିକାମାନଙ୍କର ଚାରି ପାଖରେ ଲାଗି ଯାଆନ୍ତି । ଫଳରେ ଜଳକଣାଗୁଡ଼ିକ

ଏକାବେଳେ ମିଶି ବଡ଼ ବଡ଼ ଜଳଟୋପାରେ ପରିଣତ ହୋଇ ବର୍ଷା କରନ୍ତି । ମାତ୍ର ଏହାର ଅସଲ ଅର୍ଥ ନ ବୁଝି ସାଧାରଣ ଲୋକେ ଭାବନ୍ତି ଯେ ଯଜ୍ଞ କରି ଘିଅ ଆହୂତି ଦେବା ଯୋଗୁ ଇନ୍ଦ୍ରରାଜା ଶାନ୍ତ ହୋଇ ବର୍ଷା କରନ୍ତି ।''

ଏ କଥା ଶୁଣି ବୁଢ଼ୀ ମା'ଙ୍କ ହସିଲା ମୁହଁଟି ଲଜ୍ୟାରେ ମଳିନ ପଡ଼ିଗଲା । ସେ ଆଉ କିଛି ନ କହି ନୀରବରେ ବସି ରହିଲେ ।

ଗଳାରୁ ଖଙ୍କାର ସଫା କରି ପଣ୍ଡିତ ବାବୁ କହିଲେ— ''ଯେତେବେଳେ ବିଜ୍ଞାନ ଆଜି ଉଡ଼ାଜାହାଜ, ରେଡ଼ିଓ, ସିନେମା ଓ ଟେଲିଭିଜନ ପ୍ରଭୃତି ଅଦ୍ଭୁତ ଦର୍ଶନୀୟ ଜିନିଷମାନ ଆମ ହାତରେ ଦେଇ ସାରିଲାଣି । ଏହାଛଡ଼ା ଏହି ବିଜ୍ଞାନ ସାହାଯ୍ୟରେ ମଣିଷ ଯାଇ ଜହ୍ନମାମୁଁଙ୍କ ଘରେ ପହଞ୍ଚିବା ପରେ ପୁଣି ଯେତେବେଳେ ଅନ୍ୟାନ୍ୟ ଗ୍ରହ ଉପଗ୍ରହ ପାଖକୁ ଯିବାକୁ ଚେଷ୍ଟା ଚଳାଇଲାଣି, ସେତେବେଳେ ଇନ୍ଦ୍ରରାଜା ରାଗିଲେ ବର୍ଷା ବନ୍ଦ କରି ଦିଅନ୍ତି ଓ ଯଜ୍ଞ କଲେ ସେ ଶାନ୍ତ ହୋଇଯାଇ ବର୍ଷା କରନ୍ତି ବୋଲି କଦାପି ଗ୍ରହଣ କରାଯାଇ ପାରିବ ନାହିଁ ।''

ଏହା ଶୁଣି ବୁଢ଼ୀ ମା' ହସିଲା ମୁହଁରେ ଥଟ୍ଟା କରି କହି ପକାଇଲା—

—''ବିଜ୍ଞାନ ଯଦି ଏତେ କଥା କରିପାରୁଛି, ମରୁଡ଼ି ହେଲେ ବରଷା କରାଇ ପାରୁନାହିଁ କାହିଁକି ?''

ବୁଢ଼ୀ ମା' ପାଟିରୁ କଥା ନ ସରୁଣୁ ରୁବି ପଚାରି ଦେଲା—''ସତରେ ଦରକାରବେଳେ ବର୍ଷା ନ ହେଲେ, ବୈଜ୍ଞାନିକମାନେ କ'ଣ ଅନ୍ୟ କୌଣସି ଉପାୟରେ ବର୍ଷା କରାଇ ପାରିବେ ନାହିଁ, ଦାଦା ?''

ପୂର୍ଣ୍ଣବାବୁ ହସିଲା ମୁହଁରେ କହିଲେ । "ଏ କ୍ଷେତ୍ରରେ ବିଜ୍ଞାନ ମଧ୍ୟ ପଛରେ ପଡ଼ି ନାହିଁ । ଏବେ ବୈଜ୍ଞାନିକମାନେ କୃତ୍ରିମ ଉପାୟରେ ବର୍ଷା କରାଇବାରେ ସଫଳ ହୋଇ ସାରିଲେଣି ।"

ବୁଢ଼ୀ ମା' ପଚାରିଲେ—"କୋଉଠି ଏଭଳି ବରଷା ହେଲାଣି ନା ତୁ ମନରୁ ବାନ୍ଧି ଏ କଥା କହୁଛୁ ?"

ପୂର୍ଣ୍ଣବାବୁ କହିଲେ—"ଏବେ ଆମେରିକା, ଆଫ୍ରିକା, ଅଷ୍ଟ୍ରେଲିଆ, କାନାଡ଼ା ଓ ଇସ୍ରାଏଲ ପ୍ରଭୃତି ଦେଶମାନଙ୍କରେ କୃତ୍ରିମ ଉପାୟରେ ବର୍ଷା କରାଯାଇ ପାରୁଛି ।"

କଥା ମଝିରେ କିଟୁ ପଚାରି ଦେଲା—"ଆମ ଦେଶରେ କ'ଣ ଆଜିଯାଏ ଏହି ଉପାୟରେ ବର୍ଷା କରାଯାଇ ପାରିନାହିଁ ?"

ପୂର୍ଣ୍ଣ ବାବୁ କହିଲେ—"ଆମ ଦେଶରେ ବୈଜ୍ଞାନିକମାନେ ମଧ୍ୟ ଏ କ୍ଷେତ୍ରରେ ନୀରବ ରହି ନାହାନ୍ତି । ଆମ ଦେଶର ବିହାରର ପାଟଣା, ଦିଲ୍ଲୀ, ଆଗ୍ରା, କଲିକତା ଓ ଜୟପୁର ଆଦି ସ୍ଥାନମାନଙ୍କରେ ଏହି କୃତ୍ରିମ ଉପାୟରେ କେତେଥର ବର୍ଷା କରାଯାଇଛି ।"

ଏହା ଶୁଣି ବୁଢ଼ୀ ମା' ହଠାତ୍ ପଚାରି ଦେଲା—"ଏ ବର୍ଷ ଏତେଦିନ ଧରି ବର୍ଷା ହେଉ ନଥିଲା ବୋଲି ଚାରିଆଡ଼େ ହା-ହାକାର ପଡ଼ି ଯାଇଥିଲା । କାହିଁ କିଏ ବରଷା କରାଇ ଦେଲା ନାହିଁ ?"

କିଟୁ ପଚାରି ଦେଲା—"ସତରେ, ଏ ବର୍ଷ ଆମ ରାଜ୍ୟରେ କାହିଁ କୃତ୍ରିମ ଉପାୟରେ ବର୍ଷା କରାଗଲା ନାହିଁ ?"

ପୂର୍ଣ୍ଣ ବାବୁ କହିଲେ—"ଯଦିଓ ଏହା ଆମ ଦେଶରେ ସମ୍ଭବ ହେଲାଣି, ତେବେ କେତେକ ଅସୁବିଧା ଯୋଗୁଁ ଏହା ବହୁଳ ଭାବେ କାର୍ଯ୍ୟକାରୀ ହୋଇପାରି ନାହିଁ । ବର୍ତ୍ତମାନ ସୁଦ୍ଧା ଏହା କେବଳ ଆମେରିକାରେ ବହୁଳ ଭାବେ ପ୍ରସାର ଲାଭ କରିପାରିଛି । ଏପରିକି ଆମେରିକାର କେତେକ କମ୍ପାନୀ ଦରକାରବେଳେ କୃତ୍ରିମ ଉପାୟରେ ବର୍ଷା କରାଇ ଜନସାଧାରଣଙ୍କୁ ଯୋଗାଇ ଦେବା ପାଇଁ କଣ୍ଟ୍ରାକ୍ଟ ନେଉଛନ୍ତି । ଆଶା କରାଯାଏ ଯେ, ଆଉ ଅଳ୍ପ ଦିନ ପରେ ଆମ ଦେଶରେ ଏହା ମଧ୍ୟ ବହୁଳ ଭାବେ କାର୍ଯ୍ୟକାରୀ ହୋଇପାରିବ । ସେତେବେଳେ ବର୍ଷାଋତୁରେ ଦରକାରବେଳେ ବର୍ଷା ନ ହେଲେ ମଧ୍ୟ ଏହି କୃତ୍ରିମ ଉପାୟରେ ବର୍ଷା କରାଇ ଲୋକମାନଙ୍କୁ ମରୁଡ଼ି ଦାଉରୁ ରକ୍ଷା କରି ହେବ ।"

କୃତ୍ରିମ ଉପାୟରେ ବର୍ଷା କିପରି କରାଯାଏ ?

ରୁବି ପଚାରିଲା—"ବୈଜ୍ଞାନିକମାନେ କୃତ୍ରିମ ଉପାୟରେ କିପରି ବର୍ଷା କରାଇ ପାରୁଛନ୍ତି, ସେ ବିଷୟରେ ଆମକୁ ଟିକେ କୁହ, ଦାଦା ?"

ପୂର୍ଣ୍ଣ ବାବୁ କହିଲେ—"ତୁମ୍ଭେମାନେ ତ ଏବେ ପିଲା । ଏହାର ଜଟିଳ ତତ୍ତ୍ୱ ବୁଝିବା ବିଷୟରେ ତୁମ ପକ୍ଷରେ ବର୍ତ୍ତମାନ ଟିକେ କଷ୍ଟ କର ହେବ । ତୁମ୍ଭେମାନେ ଆଉ ଅଧିକ ପଢ଼ିଲେ ଏ ବିଷୟରେ ଭଲ ଭାବରେ ବୁଝିପାରିବ । ତେବେ ଏତିକି ଜାଣିରଖ ଯେ ବୈଜ୍ଞାନିକମାନେ ଲୁଣଗୁଣ୍ଡ, ସାବୁନ ଫେଣ, ଓ ବରଫଗୁଣ୍ଡର ଏକ ମିଶ୍ରଣକୁ ନେଇ ଆକାଶରେ ଥୋକିଏ ରହି ବର୍ଷା କରାଉ ନ ଥିବା ମେଘ ଦେହରେ ବାଞ୍ଛି ଦେଉଛନ୍ତି । ଫଳରେ ସେହି ମେଘ ଦେହରେ

ଥିବା ଜଳକଣାମାନ ଘନୀଭୂତ ହେବା ଯୋଗୁଁ ବଡ଼ ବଡ଼ ଜଳବିନ୍ଦୁରେ ପରିଣତ ହୋଇ ବର୍ଷା ଆକାରରେ ଭୂମିରେ ପଡ଼ୁଛନ୍ତି । ଏହାଛଡ଼ା ବୈଜ୍ଞାନିକମାନେ "ସିଲ୍‌ଭର ଆଇଓଡ଼ାଇଡ଼୍" ନାମକ ଏକ ରାସାୟନିକ ପଦାର୍ଥକୁ ମେଘ ଦେହରେ ବାଞ୍ଛି ଦେଇ ବର୍ଷା କରାଇ ପାରୁଛନ୍ତି । କେତେକ କ୍ଷେତ୍ରରେ ଏହି ସିଲ୍‌ଭର ଆଇଓଡ଼ାଇଡ଼୍ ସହିତ "ଲେଡ଼୍ ଆଇଓଡ଼ାଇଡ଼୍" ନାମକ ଆଉ ଏକ ରାସାୟନିକ ପଦାର୍ଥକୁ ମିଶାଇ କୃତ୍ରିମ ବୃଷ୍ଟିପାତ ପାଇଁ ବ୍ୟବହାର କରାଯାଉଛି । ଏହା ଫଳରେ ଦେଖାଯାଉଛି ଯେ କୃତ୍ରିମ ଉପାୟରେ କରାଯାଉଥିବା ବର୍ଷାରପରିମାଣ ପ୍ରାକୃତିକ ଉପାୟରେ ହେଉଥିବା ବର୍ଷାର ପରିମାଣ ଅପେକ୍ଷା ଯଥେଷ୍ଟ ଅଧିକ ।

ଏହି ସମୟରେ ଜିତୁ ପଚାରିଲା—"ବୈଜ୍ଞାନିକମାନେ ଏହି ସବୁ ମିଶ୍ରଣକୁ ନେଇ ଏତେ ଉଚ୍ଚତାରେ ଥିବା ମେଘ ପାଖକୁ ଯାଆନ୍ତି କିପରି ?"

ପୂର୍ଣ୍ଣ ବାବୁ କହିଲେ—"ଭଲ କଥାଟିଏ ପଚାରିଲୁ ଜିତୁ । ତେବେ ଶୁଣ ! ଆଗେ ବୈଜ୍ଞାନିକମାନେ ଏହି ମିଶ୍ରଣକୁ ପୃଥିବୀ ଉପରୁ ମେଘ ଦେହକୁ ଛାଡ଼ୁଥିଲେ । ମାତ୍ର ଏଥିରେ ବିଶେଷ କିଛି ସଫଳତା ମିଳୁ ନଥିଲା । ତେଣୁ ଏବେ ଏଥିପାଇଁ ସେମାନେ ଏକ ଉଡ଼ାଜାହାଜ ବ୍ୟବହାର କରୁଛନ୍ତି ।" ଏତିକ କହି ପୂର୍ଣ୍ଣବାବୁ ପାଣି ଗିଲାସେ ମଗାଇ ପିଇସାରି ଜିତୁକୁ ଚାହିଁ ପୁଣି ଆରମ୍ଭ କଲେ—"ମେଘ ଆକାଶରେ ଅଧିକ ଉଚ୍ଚତାରେ ସୃଷ୍ଟି ହୁଏ ନାହିଁ । ଏହା ସବୁବେଳେ ପୃଥିବୀପୃଷ୍ଠରୁ ପ୍ରାୟ ଏଗାର କିଲୋମିଟର ଉଚ୍ଚତା ଭିତରେ ଆକାଶରେ ସୃଷ୍ଟି ହୋଇଥାଏ । ଅର୍ଥାତ୍ ମେଘ ସୃଷ୍ଟି ହେଉଥିବା ଉଚ୍ଚତା

ପର୍ଯ୍ୟନ୍ତ ଉଡ଼ାଜାହାଜଟିଏ ସହଜରେ ଯାଇପାରେ । ତେଣୁ ବୈଜ୍ଞାନିକମାନେ ଏହି କାର୍ଯ୍ୟ ପାଇଁ ମେଘ ପାଖକୁ ଯିବା ସମୟରେ ଏକ ଉଡ଼ାଜାହାଜର ସାହାଯ୍ୟ ନେଉଛନ୍ତି ।"



ରୁବ ପଚାରିଲା—"ଦାଦା, ଆପଣଙ୍କ କହିବା ଅନୁସାରେ ବୈଜ୍ଞାନିକମାନେ କେବଳ ଆକାଶରେ ଆଗରୁ ଘୋଟି ରହିଥିବା ମେଘ ଦେହରୁ ହିଁ କୃତ୍ରିମ ଉପାୟରେ ବର୍ଷା କରାଇ ପାରୁଛନ୍ତି । ତେବେ ଆକାଶରେ ଆଦୌ ମେଘ ନ ଥିଲେ ବୈଜ୍ଞାନିକମାନେ କୃତ୍ରିମ ମେଘ ସୃଷ୍ଟି କରି ସେଥିରୁ କ'ଣ ବର୍ଷା କରାଇ ପାରିବେ ନାହିଁ ?"

## କୃତ୍ରିମ ମେଘ ସୃଷ୍ଟି କରିବା କ'ଣ ସମ୍ଭବ ?

ପୂର୍ଣ୍ଣ ବାବୁ କହିଲେ—"କୃତ୍ରିମ ମେଘ ସୃଷ୍ଟି କରି ତହିଁରୁ ବୃଷ୍ଟି କରାଇବା ବହୁ କଷ୍ଟ ସାଧ୍ୟ ବ୍ୟାପାର । ତଥାପି ବୈଜ୍ଞାନିକମାନଙ୍କର ଗବେଷଣା ତଥା ପରୀକ୍ଷା ନିରୀକ୍ଷା ଏ କ୍ଷେତ୍ରରେ ଆଗେଇ ଚାଲିଛି । ବର୍ତ୍ତମାନ ସୁଦ୍ଧା ସେମାନେ ଏଥିରେ ସଂପୂର୍ଣ୍ଣ ଭାବେ ସଫଳ ହୋଇପାରି ନ

ଥିଲେ ମଧ୍ୟ କେତେକାଂଶରେ ସଫଳ ହୋଇ ଥିବାର ଜଣା ପଡ଼ୁଛି । ଆଗାମି ଅଳ୍ପ କେତେ ବର୍ଷ ଭିତରେ ସେମାନେ ଆକାଶରେ କୃତ୍ରିମ ମେଘ ସୃଷ୍ଟି କରିପାରିବେ ବୋଲି ଆଶା ପୋଷଣ କରୁଛନ୍ତି । ସେତେବେଳେ ସେମାନେ ଆକାଶରେ ଆଦୌ ମେଘ ନ ଥିଲେ ମଧ୍ୟ କୃତ୍ରିମ ଉପାୟରେ ମେଘ ସୃଷ୍ଟି କରି ତହିଁରୁ ବର୍ଷା କରାଇ ପାରିବେ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।"

ଏହା ଶୁଣି ରୁଦ୍ର ପଚାରିଲା–"ତା' ହେଲେ ସେତେବେଳେ ତ ବର୍ଷା ଅଭାବରୁ ଏ ପୃଥିବୀରେ ଆଉ ମରୁଡ଼ି ଦେଖାଦେବ ନାହିଁ ?"

ପୂର୍ଣ୍ଣବାବୁ କହିଲେ—"ସେତେବେଳେ ତ ଇଚ୍ଛାନୁଯାୟୀ ବର୍ଷା କରାଇ ହେବ । ତେଣୁ ବର୍ଷା ଅଭାବର ପ୍ରଶ୍ନ ଉଠିବ କାହିଁକି ?"

ଏତିକିବେଳେ ଜିତୁ ପଚାରି ଦେଲା—"ବୈଜ୍ଞାନିକମାନେ ଯିନା କୃତ୍ରିମ ବର୍ଷା କରାଇ ମରୁଡ଼ି ଦାଉରୁ ରକ୍ଷା କରି ପାରିବେ । ମାତ୍ର ଆବଶ୍ୟକଠାରୁ ଅଧିକ ବର୍ଷା ହୋଇ ଫସଲ ନଷ୍ଟ ହେଲେ ସେମାନେ କ'ଣ ରକ୍ଷାକରି ପାରିବେ ?"

ଅଦରକାରୀ ବର୍ଷାକୁ ବି ବନ୍ଦ କରିହେବ ।

ପୂର୍ଣ୍ଣ ବାବୁ କହିଲେ—"ଯାହାହେଉ, ଭଲ କଥାଟିଏ ତୋ' ମୁଣ୍ଡକୁ ଢୁକିଛି ଜିତୁ ! କଥାରେ ଅଛି, ଜଳ ବଢ଼ିଲେ ସୃଷ୍ଟି ନାଶ, ଜଳ ଘଟିଲେ ସୃଷ୍ଟି ନାଶ । ବର୍ଷା ଅଭାବରୁ ମରୁଡ଼ି ହୁଏ, ଆଉ ଆବଶ୍ୟକଠାରୁ ଅଧିକ ବର୍ଷା ହେଲେ ଫସଲ ନଷ୍ଟ ହୋଇଯାଏ । ତେଣୁ ଦରକାର ହେଲେ କୃତ୍ରିମ ବୃଷ୍ଟିପାତର ବ୍ୟବସ୍ଥା କରିବା ଭଲି

ଅନାବଶ୍ୟକ ବୃଷ୍ଟିପାତକୁ ବନ୍ଦ କରିବା ପାଇଁ ବୈଜ୍ଞାନିକମାନେ ମଧ୍ୟ ଗବେଷଣା ଚଳାଇଛନ୍ତି । ସେମାନେ ଏଥିରେ ଅନେକାଂଶରେ ସଫଳ ହୋଇଥିବାର ଖବର ମିଳୁଛି । ଏ କ୍ଷେତ୍ରରେ ବୈଜ୍ଞାନିକମାନଙ୍କର ଗବେଷଣାରୁ ଜଣାଯାଏ, ବର୍ଷା ଦରକାର ନଥିଲାବେଳେ ଆକାଶରେ ମେଘ ଉଠାଇଲେ ଅଙ୍ଗାର ଜାତୀୟ ପଦାର୍ଥକୁ ଉଡ଼ାଜାହାଜରେ ନେଇ ମେଘ ଦେହରେ ବାଣ୍ଟି ଦିଆଯାଉଛି । ଫଳରେ ମେଘ ସବୁ ଖଣ୍ଡ ବିଖଣ୍ଡିତ ହୋଇ ଆକାଶରେ ମିଳେଇ ଯାଉଛି । ଯାହା ଦ୍ୱାରା କି ସେଥିରୁ ଆଉ ବର୍ଷା ହେଉ ନାହିଁ । ବୈଜ୍ଞାନିକମାନେ ଅନାବଶ୍ୟକ ବୃଷ୍ଟିପାତକୁ ବନ୍ଦ କରିବା ପାଇଁ ଏହିପରି ଏକ ଉପାୟ ବାହାର କରିଛନ୍ତି ।"

ଜିତୁ ପଚାରି ଦେଲା—"ତେବେ ବର୍ତ୍ତମାନ ସୁଦ୍ଧା ଏହା କେଉଁଠି କାହିଁ ତ କାର୍ଯ୍ୟକାରୀ ହୋଇ ନାହିଁ ?"

ପୂର୍ଣ୍ଣି ବାବୁ କହିଲେ—"କେତେକ କାରଣ ପାଇଁ ଏହା ଏ ପର୍ଯ୍ୟନ୍ତ ସାଧାରଣ କ୍ଷେତ୍ରରେ କାର୍ଯ୍ୟକାରୀ ହୋଇ ପାରିନାହିଁ । ତଥାପି, ଆଉ ଅଳ୍ପ କେତେ ବର୍ଷ ଭିତରେ ଏହା ନିଶ୍ଚୟ କାର୍ଯ୍ୟକାରୀ ହେବ ବୋଲି ଆଶା କରାଯାଉଛି ।"

ଝଡ଼ ବାତ୍ୟାକୁ କ'ଣ ବନ୍ଦ କରିହେବ ?

ଏହି ସମୟରେ ରୁବି ପଚାରିଲା—"ବୈଜ୍ଞାନିକମାନେ ତ ଏତେ କଥା କରି ପାରୁଛନ୍ତି । ତେବେ ବେଳେ ବେଳେ ଯେଉଁ ଝଡ଼ ବାତ୍ୟା ହେଉଛି, ତାକୁ ବନ୍ଦ କରିବା ପାଇଁ ସେମାନେ କିଛି ବ୍ୟବସ୍ଥା କରୁ ନାହାନ୍ତି କାହିଁକି ?"

ପୂର୍ଣ୍ଣି ବାବୁ କହିଲେ—"ଏ କ୍ଷେତ୍ରରେ ବୈଜ୍ଞାନିକମାନେ ମଧ୍ୟ ନୀରବ ରହି ନାହାନ୍ତି । ପୂର୍ବାପେକ୍ଷା ଏବେ

ଅଧିକ ଝଡ଼ ବତାସ କାହିଁକି ସୃଷ୍ଟି ହେଉଛି ତାହା ଜାଣିବାକୁ ସେମାନେ ବିଭିନ୍ନ ପ୍ରକାରର ପରୀକ୍ଷା ଚଳାଇଛନ୍ତି । ଏହା ଛଡ଼ା ସେମାନେ ଝଡ଼ ବାତ୍ୟାକୁ ଦୁର୍ବଳ କରିବା ପାଇଁ ଏକ ପ୍ରକାର ବୋମା ତିଆରି କରିଛନ୍ତି । ଏହାକୁ 'ବାତ୍ୟା ନିରୋଧକ ବୋମା' ବା 'ହରିକେନ୍ ବୋମା' ବୋଲି କୁହାଯାଉଛି । ଏହି ବୋମାକୁ ଝଡ଼ ବାତ୍ୟା ସୃଷ୍ଟି ହେଉଥିବା କେନ୍ଦ୍ରସ୍ଥଳକୁ ନିକ୍ଷେପ କରି ବାତ୍ୟାର ଭୟାବହତାକୁ ଦୁର୍ବଳ କରି ଦିଆଯାଉଛି । ଯାହା ଦ୍ୱାରା କି ଏହି ଦୁର୍ବଳ ବାତ୍ୟା ଆଉ କୌଣସି କ୍ଷତି କରିପାରୁ ନାହିଁ ।"

ପୂର୍ଣ୍ଣି ବାବୁଙ୍କ ମୁହଁରୁ କଥା ନ ସରୁଣୁ ରୁବି ପୁଣି ପଚାରି ଦେଲା—"ତା'ହେଲେ ଏବେ ଝଡ଼ ବାତ୍ୟା ହେଲାବେଳେ ଏହାକୁ ପ୍ରୟୋଗ କରାଯାଉ ନାହିଁ କାହିଁକି ?"

ପୂର୍ଣ୍ଣି ବାବୁ କହିଲେ—"ବୈଜ୍ଞାନିକମାନେ ଏ କ୍ଷେତ୍ରରେ ସଫଳ ହୋଇ ସାରିଥିଲେ ମଧ୍ୟ କେତେକ କାରଣରୁ ଏହାକୁ ଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ କରାଯାଇ ପାରିନାହିଁ ।"

ଏହି କଥା କହିବା ମଝିରେ ପୂର୍ଣ୍ଣିବାବୁ ଛୋଟ ଢୋକ ନେଇ କହିବାର ଢଙ୍ଗ ବଦଳାଇ ଦେଇ ଆରମ୍ଭ କଲେ—"ତେବେ ଆଶା କରାଯାଉଛି, ଆଗାମୀ ଅଳ୍ପ କେତେ ବର୍ଷ ଭିତରେ ଏସବୁ କ୍ଷେତ୍ରରେ ଥିବା କେତେକ ଅସୁବିଧା ଦୂର ହୋଇ ସାରିଲେ ଏହା ବହୁଳ ଭାବେ କାର୍ଯ୍ୟକାରୀ ହୋଇପାରିବ । ଫଳରେ ସେତେବେଳେ ଏ ପୃଥିବୀରେ ଆଉ ବର୍ଷାର ଅଭାବରୁ ମରୁଡ଼ିର ଆଶଙ୍କା ଦେଖାଦେବ ନାହିଁ କି ଅତି ବୃଷ୍ଟି ଯୋଗୁଁ ଫସଲ ନଷ୍ଟ ହେବାର ସମ୍ଭାବନା

ରହିବ ନାହିଁ । ଏହାଛଡ଼ା ସେତେବେଳେ ଆଉ ପ୍ରଳୟଙ୍କାରୀ ଝଡ଼ ବାତ୍ୟା ତଥା ଘୂର୍ଣ୍ଣିବାତ୍ୟାର ଆଗମନରେ ଲୋକମାନେ ଭୟରେ ଆତଙ୍କିତ ହେବେ ନାହିଁ ।"

ଇନ୍ଦ୍ର ରାଜା ଅଉ କରିବେ କ'ଣ ?

ଏ କଥା ଶୁଣି ଜିତୁ ଅତ୍ୟନ୍ତ ଭାବପ୍ରବଣ ହୋଇ କହି ପକାଇଲା—"ତା'ହେଲେ ତ ବୈଜ୍ଞାନିକମାନେ ସେତେବେଳେ ନିଜ ଇଚ୍ଛାନୁସାରେ ବର୍ଷା କରାଇ ପାରିବେ ?"

ପୂର୍ଣ୍ଣି ବାବୁ କହିଲେ—"ହଁ ବର୍ଷା ଆଉ ଝଡ଼ ବାତ୍ୟା ଇତ୍ୟାଦି କେତେବେଳେ ସମ୍ପୂର୍ଣ୍ଣ ଭାବେ ବୈଜ୍ଞାନିକ-ମାନଙ୍କର ନିୟନ୍ତ୍ରଣରେ ରହିବ ।"

ଏହି ସମୟରେ ବଗଲା ଜିତୁ ବୁଢ଼ୀ ମା'ଙ୍କୁ ଚିଡ଼େଇବା ପାଇଁ ହାସ୍ୟଳ କରି କହିଲା—"ତେବେ ସେତେବେଳେ ଇନ୍ଦ୍ର ରାଜା ଆଉ କରିବେ କ'ଣ ?"



ପୂର୍ଣ୍ଣି ବାବୁ ପରିହାସ ଛଳରେ କହିଲେ—"ଇନ୍ଦ୍ର ରାଜା ଆଉ କ'ଣ କରିବେ ! ସେତେବେଳେ ବୈଜ୍ଞାନିକ-ମାନେ ଇନ୍ଦ୍ର ରାଜାଙ୍କ ହାତରୁ ସମସ୍ତ କ୍ଷମତା ଛଡ଼ାଇ

ଆଣିବେ, ଆଉ ତାଙ୍କ ସିଂହାସନକୁ ମଧ୍ୟ ଦଖଲ କରି ନେବେ ।"

ଏ କଥା ଶୁଣି ପିଲା ଦୁହେଁ ବୁଢ଼ୀ ମା'ଙ୍କ ଆଡ଼େ କଣେଇ କଣେଇ ଚାହିଁ ଖାଲି ମୁରୁକି ମୁରୁକି ହସିଲେ । ହେଲେ ବୁଢ଼ୀ ମା' ଏ ସବୁ କଥାରେ କିଛି ନ କହି ରାଗରେ ଖାଲି ତଳକୁ ମୁହଁ ପୋତି ବସି ରହିଲେ ।

ପୂର୍ଣ୍ଣ ବାବୁ ବୁଢ଼ୀ ମା'ଙ୍କୁ ଆହୁରି ରଗେଇବା ପାଇଁ ଥଟ୍ଟାଳିଆ ଭଙ୍ଗୀରେ କହିଲେ—"ଖାଲି ସେତିକି ନୁହେଁ, ପୃଥିବୀର ବୈଜ୍ଞାନିକମାନଙ୍କର ଏଭଳି ଅଦ୍ଭୁତ କାର୍ଯ୍ୟ କଥା ଶୁଣି ଇନ୍ଦ୍ର ରାଜା ବୋଧହୁଏ ଆଜିଠୁଁ ଖିଆପିଆ ଛାଡ଼ି ଦେବେଣି । ଆଉ ଏଇଥି ପାଇଁ ଏବେଠାରୁ ସମଗ୍ର ଇନ୍ଦ୍ରପୁରୀରେ ଚହଳ ପଡ଼ି ଯିବଣି ।" ଏହା ଶୁଣି ରୁବି କିଲୁ ଭାଇଭଉଣୀ ଦୁହେଁ ତାଳି ମାରି ଖୁବ୍ ଜୋରରେ ହୋ···ହୋ ହୋଇ ହସିବାକୁ ଲାଗିଲେ ।

ଏଥର ବୁଢ଼ୀକୁ ଆଉ ସମ୍ଭାଳେ କିଏ ? ରାଗରେ ସେ ଥରିବାକୁ ଲାଗିଲେ । ମୁହଁଟାକୁ ଫଣ ଫଣ କରି ବସିଲା ଜାଗାରୁ ଉଠି ପଡ଼ିଲେ । ପଢ଼ାଘରୁ ବାହାରକୁ ଆସୁ ଆସୁ ସେ କହିବାକୁ ଲାଗିଲେ—"ଏ କି ଯୁଗ ହେଲା ?···କି ବଇଗିଆନ ବାହାରିଲେ ଯେ ନ ଶୁଣିବା କଥା ସବୁ କାନ ଆଜି ଶୁଣିଲା । ମେଣ୍ଢା ଛୁଆ ଦି'ଟା ବି ରଖେଇ ବସେଇ ଦେଲେ ନାହିଁ । ଇମିତି ହେଲେ ଏ ଦୁନିଆ ଆଉ ରହିବ ତ ?"

ଏତିକିବେଳେ ଖଞ୍ଜା ଭିତରୁ ରୁବି ବୋଉ ଶାନ୍ତିଦେବୀ କହି କହି ଆସିଲେ—"ସେଠି ପାଠପଢ଼ା

ହେଉଛ ନା କ'ଣ ? ସେ ବୁଢ଼ୀଟା ସାଙ୍ଗରେ କାହିଁକି ଲଢେଇଚ କହିଲ ?"

ଏହି କଥା କହୁ କହୁ ଶାନ୍ତଦେବୀ ପଢ଼ାଘର ଭିତରକୁ ପଶିଯାଇ ପୂର୍ଣ୍ଣ ବାବୁଙ୍କୁ ଲକ୍ଷ୍ୟ କରି କହିଲେ— "ତମେ ମଧ୍ୟ ସେ ପିଲା ଦୁହିଁଙ୍କ ସାଙ୍ଗରେ ମିଶି ପିଲା ହୋଇ ଯାଉଛ ?"

ଏ କଥା ଶୁଣି ପୂର୍ଣ୍ଣ ବାବୁ କିଛି ନ କହି ଖାଲି ତଳକୁ ଚାହିଁ ହସିବାକୁ ଲାଗିଲେ । ଉତ୍ତରରେ ରୁବି ଜିତୁ ଭାଇଭଉଣୀ ଦୁହେଁ ଧୀର ସ୍ୱରରେ କହିଲେ—"ନାଇଁ, ବୋଉ, ଆମେ ଆଉ ବୁଢ଼ୀ ମା' ସାଙ୍ଗରେ ଲଢେଇବୁ ନାହିଁ ।"

ଶାନ୍ତଦେବୀ କହିଲେ—"ହଉ, ଖାଇବ ଚାଲ ।"

ଏବେ ସମସ୍ତେ ପଢ଼ାଘର ଭିତରୁ ବାହାରି ଖଞ୍ଜା ଭିତରକୁ ଚାଲିଗଲେ ।





# ଯନ୍ତ୍ର ମଣିଷ

ପହିଲି ଚଇତର ଏକ ଧୋବ ଜଇଁଫୁଲିଆ ସନ୍ଧ୍ୟା । ସଫା ଜହ୍ନ ଆଲୁଅ ଗଛରଆଡ଼େ ବିଛାଡ଼ି ହୋଇ ପଡ଼ୁଛି । ଦକ୍ଷିଣ ଦିଗରୁ ସୁଲୁସୁଲିଆ ମଳୟ ପବନ ବହି ଆସୁଛି । ଜିତୁ, ରୁବି ଭାଇଭଉଣୀ ଦୁହେଁ କଣ୍ଢେଇ ଦୁଇଟି ଧରି ଦାଣ୍ଡ ମଝିରେ ଖେଳିବାରେ ଲାଗି ଯାଇଛନ୍ତି । ସେ ଦୁହିଁଙ୍କ ମନ ଭାରି ଖୁସି । ବହୁ ଦିନପରେ ଗୋପାଳ ତାଙ୍କ ମାମୁଁ ଘରକୁ ଆସିଛନ୍ତି । ଗୋପାଳବାବୁ ଆମେରିକାରେ ରହନ୍ତି । ଦୁଇମାସ ପାଇଁ ଏବେ ସେ ଗାଆଁକୁ ଆସିଛନ୍ତି । ମଝିରେ ମାତ୍ର ଗୋଟିଏ ଦିନ ପାଇଁ ସେ ଜିତୁଙ୍କ ଘରଆଡ଼େ ବୁଲି ଆସିଛନ୍ତି । ଆମେରିକାରୁ ସେ ଜିତୁ ପାଇଁ ଗୋଟିଏ ଦାମିକିଆ ଖେଳଣା କୁକୁର ଆଉ ରୁବି ପାଇଁ ଗୋଟିଏ ଖେଳଣା ବିଲେଇ ଆଣିଛନ୍ତି । ସେହି ଖେଳଣା କଣ୍ଢେଇ ଦୁଇଟିକୁ ଧରି ଭାଇଭଉଣୀ ଦୁହେଁ ମନ ଖୁସିରେ ଖେଳିବାରେ ମାତି ଯାଇଛନ୍ତି ।

ତେଣେ ଗୋପାଳବାବୁ ଦାଣ୍ଡ ମେଲିରେ ବସି ଜିତୁର ବୁଢ଼ା ଅଜାଙ୍କ ସହିତ କଥା ହେଉଛନ୍ତି । କିଛି ସମୟ ପରେ ଖେଳ ଛାଡ଼ି ଦେଇ ଭାଇଭଉଣୀ ଦୁହେଁ ଦୌଡ଼ି ଦୌଡ଼ି ଯାଇ ସେଠାରେ ହାଜର ହୋଇଗଲେ । ହଠାତ୍ ଭଣଜା ଭାଣିଜୀ ଦୁହିଁଙ୍କୁ ଏପରି ଅବସ୍ଥାରେ ଦେଖି ଗୋପାଳବାବୁ ପଚାରି ଦେଲେ—"କ'ଣ ହେଲାକି, ଧଇଁସଇଁ ହୋଇ ଏମିତି ଦଉଡ଼ୁଛ କାହିଁକି ?"

ଖୁବ୍ ଜୋର୍‌ରେ ଦୌଡ଼ି ଦୌଡ଼ି ହାଲିଆ ହୋଇ ଯାଇଥିବାରୁ ଭାଇଭଉଣୀ ଦୁହେଁ ସଙ୍ଗେ ସଙ୍ଗେ କିଛି କହି

ପାଉଲେ ନାହି । ନିଶ୍ୱାସ ଟିକେ ଘର ଧରିଲା ପରେ କିତୁ ପ୍ରଥମେ ରହି ରହି ଆରମ୍ଭ କଲା—"ମାମୁଁ ! ମୋତେ ଯୋଉ ଖେଳଣା କୁକୁରଟା ଦେଇଥିଲ ସେଇଟା ଗୋଟାଏ କାଅନ୍ତା କୁକୁର ଭଳି ଦାଣ୍ଡ ମଝିରେ ଏପଟ ସେପଟ ହୋଇ ଭୋ-ଭୋ ହୋଇ ଭୁକୁଛି ।"

କିତୁ ପାଟିରୁ କଥା ଛଡେଇ ନେଇ ରୁବି କହି ପକାଇଲା—"ମୋତେ ଯୋଉ ଖେଳଣା ବିଲେଇଟା ଦେଇଥିଲ, ସେଇଟା ବି ଗୋଟାଏ ଜୀଅନ୍ତା ବିଲେଇ ଭଳି ମିଆଉଁ-ମିଆଉଁ ହୋଇ ବୋବାଉଛି ।"



ଏ କଥା ଶୁଣି ବୁଢ଼ା ଅଜା ଆଶ୍ଚର୍ଯ୍ୟ ହୋଇଯାଇ ପଚାରି ଦେଲେ—"କ'ଣ ହେଲା, ଖେଳଣା କଣ୍ଢେଇ-ଗୁଡ଼ାକ ଜୀଅନ୍ତା କୁକୁର ବିଲେଇଙ୍କ ଭଳି ବୋବାଉଛନ୍ତି ?"

ଏହା ଶୁଣି ଗୋପାଳ ବାବୁ ଟିକିଏ ହସିଦେଇ କହିଲେ—"ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସେହି କଣ୍ଢେଇ ଦୁଇଟି ଆମେରିକାରେ ବୈଜ୍ଞାନିକ ପଦ୍ଧତିରେ ତିଆରି ହୋଇଅଛି । ସେ ଦୁଇଟିର ଭିତରେ ଛୋଟ ଛୋଟ କମ୍ପ୍ୟୁଟର ଓ ଶବ୍ଦ ପ୍ରସାରଣି ଯନ୍ତ୍ର ଖଞ୍ଜା ଯାଇଛି । ସେହି କମ୍ପ୍ୟୁଟର ଦୁଇଟିକୁ ଆଗରୁ କୁକୁର ଭଳି ଭୋ-ଭୋ ହୋଇ ଭୁକିବା ଏବଂ ବିଲେଇ ଭଳି ମିଆଉଁ-

ମିଆଉଁ ହୋଇ ବୋବେଇବା କଥା ଶିଖେଇ ଦିଆଯାଇଛି ।"

ଏ କଥା ଶୁଣି ବୁଢ଼ା ଅଜା ହଠାତ୍ ପଚାରିଲେ—"ଯନ୍ତ୍ରଟାକୁ ପୁଣି ଏତେ କଥା ଶିଖେଇ ଦିଆଗଲା କିପରି ?

ଗୋପାଳ ବାବୁ ହସି ହସି କହିଲେ- "ଆଗରୁ ସେହି କମ୍ପ୍ୟୁଟର ଦୁଇଟିରେ କୁକୁର ଆଉ ବିଲେଇ ବୋବେଇବା ଶବ୍ଦକୁ ରେକର୍ଡ଼ିଂ କରି ରଖାଯାଇଛି । କଣ୍ଢେଇ ଦେହରେ ବାହାରକୁ ଦିଶୁଥିବା ବୋତାମ ସେହି କମ୍ପ୍ୟୁଟର ସହିତ ସଂଯୁକ୍ତ ହୋଇଅଛି । ସେହି ବୋତାମ କୌଣସି କାରଣରୁ ଚିପି ହୋଇଯିବା ଦ୍ୱାରା କଣ୍ଢେଇ ଭିତରେ ଥିବା କମ୍ପ୍ୟୁଟରରୁ ଏହିଭଳି ଶବ୍ଦ ବାହାରି ଅଛି ।"

ଏହି କଥା କହୁ କହୁ ଗୋପାଳ ବାବୁ କିଶୁ, ରୁବିଙ୍କୁ ଲକ୍ଷ୍ୟ କରି କହିଲେ—"ଖେଳୁ ଖେଳୁ ତୁମେ ଦୁହେଁ କଣ୍ଢେଇ ଦୁଇଟିର ସେହି ବୋତାମ ଦୁଇଟାକୁ ବୋଧହୁଏ ଚିପି ଦେଇଛ···ନୁହେଁ ?"

ରୁବି କହିଲା—"ହଁ ମାମୁଁ ! ମୁଁ ମନା କରୁଛି, କିଶୁ ମୋ କଥା ନ ମାନି ଦି'ଟାଯାକ କଣ୍ଢେଇର ବୋତାମକୁ ଚିପି ଦେଲା । ତା'ପରେ ତ କଣ୍ଢେଇ ଦି'ଟା ଏମିତି ବୋବେଇଲେ ।"

ରୁବିର କଥା ନ ସରୁଣୁ କିଶୁ କହିଲା- "ସତରେ ମାମୁଁ, ଆମେରିକାର ବୈଜ୍ଞାନିକମାନେ କେଡ଼େ ବୁଦ୍ଧିଆ ମ !

ଗୋପାଳ ବାବୁ କହିଲେ—"ଏହି ଖେଳଣା କଣ୍ଢେଇ ଦୁଇଟାର କାମ ଦେଖି ତୁମ୍ଭେମାନେ ତ ଏମିତି ଆଶ୍ଚର୍ଯ୍ୟ ହୋଇଯାଉଛ । ଆଉ ସେ ଦେଶରେ ତିଆରି ହେଉଥିବା

ଯନ୍ତ୍ର ମଣିଷର କାର୍ଯ୍ୟ ଦେଖିଲେ ତୁମ୍ଭମାନଙ୍କର ଅବସ୍ଥା ଯେ କ'ଣ ହେବ, ମୁଁ ଭାବିପାରୁ ନାହିଁ ।"

ଯନ୍ତ୍ର ମଣିଷ କ'ଣ ?

ଏ କଥା ଶୁଣି ବୁଢ଼ା ଅଜାଙ୍କ ପାଟିରୁ ବାହାରି ପଡ଼ିଲା–

—"ଆଁ, କ'ଣ କହିଲ, ଯନ୍ତ୍ର ମଣିଷ ! ସେ ପୁଣି କ'ଣ ?"

ଗୋପାଳ ବାବୁ କହିଲେ—"ସେ ଦେଶର ବୈଜ୍ଞାନିକମାନେ ଗୋଟିଏ ପ୍ରକାର ଯନ୍ତ୍ର ତିଆରି କରିଛନ୍ତି । ସେହି ଯନ୍ତ୍ରଟି ମଣିଷ କରୁଥିବା ବିଭିନ୍ନ ପ୍ରକାର କାମକୁ ଖୁବ୍ କମ୍ ସମୟ ମଧ୍ୟରେ କରିଦେଇ ପାରୁଛି । ଆହୁରି ମଧ୍ୟ କେତେକ କ୍ଷେତ୍ରରେ ମଣିଷ ଯେଉଁ ସବୁ କାର୍ଯ୍ୟ କରିବାକୁ ଅକ୍ଷମ, ଏହି ଯନ୍ତ୍ରରେ ସେ ସବୁ କାର୍ଯ୍ୟକୁ ଅକ୍ଳେଶରେ କରିଦେଇ ପାରୁଛି । ମଣିଷ ଭଳି ନାନା ପ୍ରକାର କାର୍ଯ୍ୟ କରି ପାରୁଥିବା ଏହି ଯନ୍ତ୍ରକୁ ଯନ୍ତ୍ର ମଣିଷ ବୋଲି କୁହାଯାଉଛି । ଏହି ଯନ୍ତ୍ର ମଣିଷକୁ କେତେକ ମଧ୍ୟ ରୋବର୍ଟ ବୋଲି କହୁଛନ୍ତି ।"

ଜିତୁ ପଚାରି ଦେଲା–"ସେଇ ଯନ୍ତ୍ର ମଣିଷ କେଉଁ ଯନ୍ତ୍ରରେ ତିଆରି ହୋଇଛି ମାମୁଁ ?" ଗୋପାଳ ବାବୁ କହିଲେ—"ବିଭିନ୍ନ ଇଲେକ୍‌ଟ୍ରୋନିକ୍ସ ଯନ୍ତ୍ରପାତିରେ ବୈଜ୍ଞାନିକମାନେ ଯନ୍ତ୍ର ମଣିଷକୁ ତିଆରି କରିଛନ୍ତି ।"

ଏହି ସମୟରେ ରୁବି ପଚାରି ଦେଲା—"ଯନ୍ତ୍ର ମଣିଷ ଦେଖିବାକୁ କ'ଣ ମଣିଷ ଭଳି ?"

ଗୋପାଳ ବାବୁ କହିଲେ—"ଯନ୍ତ୍ର ମଣିଷଗୁଡ଼ିକ ଦେଖିବାକୁ ମଣିଷ ଭଳି ନୁହଁନ୍ତି । ସେ ଗୁଡ଼ିକୁ ଦେଖିବାକୁ

ସାଧାରଣ ଯନ୍ତ୍ର ଭଳି । ମାତ୍ର କେତେକ ଯନ୍ତ୍ର ମଣିଷ ଦେହରେ ଇଲେକ୍‌ଟ୍ରୋନିକ୍ସ ଯନ୍ତ୍ରପାତିରେ ତିଆରି ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗମାନ ରହିଛି । ସେ ଗୁଡ଼ିକ ଠିକ୍ ମଣିଷର ଅଙ୍ଗପ୍ରତ୍ୟଙ୍ଗ ଭଳି କାମ କରୁଛନ୍ତି । କୌଣସି ଜିନିଷକୁ ହାତ ମୁଠାରେ ଧରିବା ପାଇଁ ଏହି ଧରଣର ଯନ୍ତ୍ର ମଣିଷର



ମଣିଷ ଭଳି ହାତ, ପାପୁଲି, ମଣିବନ୍ଧ, କହୁଣୀ, ବାହୁ ଓ କାନ୍ଧ ପ୍ରଭୃତି ରହିଛି । ଏପରିକି ମଣିଷ ଯେମିତି ଗୋଟିଏ ଜିନିଷକୁ ଉଠାଇ ନେଇପାରେ । ଏଭଳି ଯନ୍ତ୍ର ମଣିଷର ବଳ ଏତେ ବେଶି ଯେ ଏହା ଖୁବ୍ ମୋଟା ମୋଟା ଲୁହାରଡ଼ ତଥା ଇସ୍ପାତ ଦଣ୍ଡକୁ ସହଜରେ ବଙ୍କେଇ ଦେଇପାରେ । ଆହୁରି ମଧ୍ୟ ଏହି ଯନ୍ତ୍ର ମଣିଷ ଦେହରେ ବିଭିନ୍ନ ଇନ୍ଦ୍ରିୟର କାମ କରିବା ପାଇଁ କେତେଗୁଡ଼ିଏ

ଯନ୍ତ୍ର ଲାଗିଛି । ଦେଖିବା ପାଇଁ ଟେଲିଭିଜନ୍ କ୍ୟାମେରା ଭଳି ଆଖି, ଶୁଣିବା ଓ କହିବା ପାଇଁ ବେତାର ଯନ୍ତ୍ର ଭଳି କେତେକ ଯନ୍ତ୍ର ରହି ଏହାକୁ ବହୁ କଥା ଜାଣିବାରେ ସାହାଯ୍ୟ କରୁଛି ।"

ଏହା ଶୁଣି ଜିତୁ ପଚାରି ଦେଲା—"ଯନ୍ତ୍ର ମଣିଷ-ଗୁଡ଼ିକ ମଣିଷ ଭଳି ଏତେ ପ୍ରକାର କାମ କପରି କରି ପାରନ୍ତି, ମାମୁଁ ?"

ଯନ୍ତ୍ର ମଣିଷ କାମ କରିପାରେ କପରି ?

ଗୋପାଳ ବାବୁ କହିଲେ—"ବର୍ତ୍ତମାନ ତୁମ୍ଭେମାନେ ଏ କଥା ସହଜରେ ବୁଝି ପାରିବ ନାହିଁ । କାରଣ, ଏହାର ତଥ୍ୟ ବଡ଼ ଜଟିଳ । ତୁମ୍ଭେମାନେ ଏବେ ପିଲା, ବଡ଼ ହେଲେ ବେଶି ପାଠ ପଢ଼ିଲେ ଏ ବିଷୟରେ ସବୁ କଥା ଜାଣି ପାରିବ କିନ୍ତୁ ଏବେ ଏତକ ଜାଣି ରଖିଥା, ଯନ୍ତ୍ର ମଣିଷକୁ ମଣିଷ ଚଳାଏ । ମଣିଷ ତା'କୁ ଯେମିତି ଆଦେଶ ଦେବ, ସେ ଠିକ୍ ସେମିତି କାମ କରିବ । ମାତ୍ର, ଏଠାରେ ଏତକ ମନେ ରଖିବା ଉଚିତ୍ ଯେ ଯନ୍ତ୍ର ମଣିଷକୁ କେତେଗୁଡ଼ିଏ କାମ କରିବା ପାଇଁ ଆଗରୁ ଶିକ୍ଷା ଦିଆ ଯାଇଥାଏ । ଅର୍ଥାତ୍ କେତେକ ପ୍ରକାର କାମ କପରି କରାଯାଇ ପାରିବ, ଯନ୍ତ୍ର ମଣିଷର ଯାନ୍ତ୍ରିକ ଦେହ ଭିତରେ ସେ ସବୁର ବ୍ୟବସ୍ଥା ଆଗରୁ କରାଯାଇଥାଏ । ତେଣୁ ସେହି ସବୁ କାମ ଭିତରୁ ଯେଉଁ କାମ କରିବାକୁ ମଣିଷ ତା'କୁ ଆଦେଶ ଦିଏ, ତାହା ସଙ୍ଗେ ସଙ୍ଗେ ସେହି କାମ କରିଦିଏ ।"

ଏହି କଥା କହୁ କହୁ କଥା ମଝିରେ ଛେପ ଢୋକି ନେଇ ଗୋପାଳ ବାବୁ ପୁଣି କହିଲେ—"ଆଉ ଗୋଟିଏ

କଥା ଜାଣି ରଖ, ଯନ୍ତ୍ର ମଣିଷ ଭିତରେ ଥିବା ଏକ ବ୍ୟାଟେରୀରୁ କିମ୍ବା ତାହା ସହିତ ସଂଯୁକ୍ତ ହୋଇଥିବା ବିଦ୍ୟୁତ୍ ଲାଇନ୍‌ରୁ ପାଉଥିବା ଶକ୍ତି ଦ୍ୱାରା ତାହା ଯେ କୌଣସି କାମ କରିପାରେ । ସାଧାରଣତଃ ଯନ୍ତ୍ର ମଣିଷର ଚାଳକ ସରୁ ତାର ସାହାଯ୍ୟରେ କିମ୍ବା ବେତାର ସାହାଯ୍ୟରେ ଯନ୍ତ୍ର ମଣିଷକୁ ବିଭିନ୍ନ କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦେଇଥାଏ ।”

ମାମୁଁଙ୍କ ମୁହଁରୁ ଏହି କଥା ଶୁଣି ଶୁଣି ରବି ଏପରି ଭାବ ବିହ୍ୱଳ ହୋଇ ପଡ଼ିଥିଲା ଯେ ହଠାତ୍ ତା’ପାଟିରୁ ବାହାରି ପଡ଼ିଲା –

କ’ଣ ହେଲା, ମଣିଷ କଥା ମାନି ଯନ୍ତ୍ରଟା ପୁଣି ମଣିଷ ଭଳି କାମ କରିପାରୁଛି ?”

ଗୋପାଳ ବାବୁ କହିଲେ – “ଖାଲି ସେତିକି ନୁହେଁ ବୈଜ୍ଞାନିକମାନେ ଆଜିକାଲି ଆହୁରି ନୂଆ ନୂଆ ପ୍ରକାରର ଯନ୍ତ୍ର ମଣିଷମାନ ତିଆରି କଲେଣି । ଗୋଟିଏ ଲେଖାଁ ଉନ୍ନତ ଧରଣର କମ୍ପ୍ୟୁଟରକୁ ଏହି ଯନ୍ତ୍ର ମଣିଷମାନଙ୍କର ମସ୍ତିଷ୍କ ଭାବରେ ବ୍ୟବହାର କରାଯାଉଛି । ଏଭଳି ଯନ୍ତ୍ର ମଣିଷକୁ ସବୁବେଳେ ଆଉ ନିର୍ଦ୍ଦେଶ ଦେବାକୁ ପଡ଼ୁ ନାହିଁ, କାରଣ କୃତ୍ରିମ ମସ୍ତିଷ୍କ ଯୋଗୁଁ ଏହା ନାନା କଥା ମନେ ରଖିପାରୁଛି ଓ ଚିନ୍ତା କରିପାରୁଛି । ତେଣୁ ଥରେ ମାତ୍ର କେତେକ କାମ କରିବାକୁ ଶିଖାଇ ଦେଲେ ତାହା ମନେରଖି ସେହିଭଳି ବହୁ କାମ କରିପାରୁଛି । ଏହାଛଡ଼ା ହଠାତ୍ କୌଣସି ଗୋଟିଏ ଘଟଣା ଘଟିଲେ କ’ଣ କରିବାକୁ ପଡ଼ିବ, ତାହା ସେ କଥା ଭାବିଚିନ୍ତି ଠିକ୍ କରିପାରୁଛି ।”

କିଛି ସମୟର ନୀରବତା ପରେ ବୁଢ଼ା ଅଜା ପଚାରିଲେ—"ତେବେ କ'ଣ ଯନ୍ତ୍ର ମଣିଷର ବି ମନେ ରଖିବା ଆଉ ଚିନ୍ତା କରିବାର ଶକ୍ତି ଅଛି ?"

ଗୋପାଳ ବାବୁ କହିଲେ—ହଁ, ଏହିପରି କୃତ୍ରିମ ମସ୍ତିଷ୍କ ଥିବା ଯନ୍ତ୍ର ମଣିଷମାନଙ୍କର ମନେ ରଖିବା ଶକ୍ତି ଆମଠାରୁ ତେର ବେଶି । ଏବେ ଆମେରିକାରେ ତିଆରି ହୋଇଥିବା ଏହିଭଳି ଏକ ପ୍ରକାର ଯନ୍ତ୍ର ମଣିଷର ମନେ ରଖିବା ଓ ଚିନ୍ତା କରିବା ଶକ୍ତି କଥା ଶୁଣିଲେ ତୁମେ ଆଶ୍ଚର୍ଯ୍ୟ ନ ହୋଇ ରହି ପାରିବ ନି । ଏଇଠି ଗୋଟିଏ କଥା ଜାଣିରଖ, ଅନ୍ୟ ଯନ୍ତ୍ରମଣିଷଗୁଡ଼ିକ ଦେଖିବାକୁ ମଣିଷ ଭଳି ନ ହେଲେ ମଧ୍ୟ ଏବେ ନୂଆ ହୋଇ ବାହାରିଥିବା ଏହି ଯନ୍ତ୍ର ମଣିଷ ଦେଖିବାକୁ କେତେକାଂଶରେ ମଣିଷ ଭଳି ଅଟେ । ଏହା ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ଆସିବା କରିପାରେ ଏବଂ କଥା ମାନି ନାନା ପ୍ରକାର କାମ କରିପାରେ । ତୁମେ ଯଦି ଏହି ଯନ୍ତ୍ର ମଣିଷକୁ ଘରେ ଥିବା ଆଲମିରା ଭିତରୁ ଖଣ୍ଡିଏ ବହି ଆଣିବାକୁ ନିର୍ଦ୍ଦେଶ ଦେବ, ତାହା ସଙ୍ଗେ ସଙ୍ଗେ କଥା ମାନି ତୁମ ପାଖରୁ ଡେଇଁ ଡେଇଁ ଚାଲିଯିବ । ଘରକୁ ଘର ଅତିକ୍ରମ କରି ଯେଉଁ ଘର ଭିତରେ ଆଲମିରା ଥିବ, ସେହି ଘର ଭିତରକୁ ସେ ଯିବ । ହାତରେ ଆଲମିରା ଖୋଲିବ, ଆଲମିରାର ଯେଉଁ ଥାକରେ ବହି ଖଣ୍ଡିକ ଥିବ, ସେହି ଥାକକୁ ଖୋଜି ନିର୍ଦ୍ଦିଷ୍ଟ ବହିଟି ବାହାର କରିବ । ତା'ପରେ ଆଲମିରା ବନ୍ଦ କରି ହାତରେ ବହି ଖଣ୍ଡିକ ଧରି ପୁଣି ଡେଇଁ ଡେଇଁ ଆସି ତମକୁ ବହି ଖଣ୍ଡିକ ଧରାଇ ଦେବ ।

ବୁଢ଼ା ଅଜା କହିଲେ—"କି ଆଶ୍ଚର୍ଯ୍ୟ କଥା ! ଯନ୍ତ୍ରଟା ଆଲମିରା ଖୋଲି ବହି ଖଣ୍ଡିକ ଆଣି ଦେଇପାରୁଛି ।"

ଗୋପାଳ ବାବୁ କହିଲେ—"ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ, ଏହାର ମସ୍ତିଷ୍କ ବା କମ୍ପ୍ୟୁଟରକୁ ଆଗରୁ ସବୁକଥା ଜଣେଇ ଦିଆଯାଇ ଥାଏ । ଯାହା ଦ୍ୱାରା କି ଆଲମିରା କେଉଁ ଘରେ ଅଛି, ତାହା କିପରି ଖୋଲାଯାଏ ଓ ବନ୍ଦ କରାଯାଏ, ତା'ର କେଉଁ ଥାକରେ ସେହି ବହି ଖଣ୍ଡିକ ଅଛି, ସେ ସବୁ କଥା ଯନ୍ତ୍ର ମଣିଷ ମନେ ରଖିଥାଏ । ତେଣୁ ସହଜରେ ସେ ସବୁ କାମ କରିପାରେ ।"

ଏ କଥା ଶୁଣି ବୁଢ଼ା ଅଜା କହିଲେ—"ଯାହାହେଲେ ବି ବୈଜ୍ଞାନିକମାନେ କ'ଣ ମଣିଏ ଭଳି କଥା କହୁଥିବା ଯନ୍ତ୍ର ମଣିଷଟିଏ ତିଆରି କରିପାରିବେ ?"

ଗୋପାଳ ବାବୁ ହସିଲା ମୁହଁରେ ଏ କଥାର ଉତ୍ତର ଦେଲେ—"ଏ କ୍ଷେତ୍ରରେ ମଧ୍ୟ ବୈଜ୍ଞାନିକମାନେ ପଛରେ ପଡ଼ି ନାହାନ୍ତି । ଯଦିଓ ମଣିଷ ଭଳି ସବୁ ପ୍ରକାର କଥା କହିପାରୁ ଥିବା ଯନ୍ତ୍ର ମଣିଷଟିଏ ଆଜି ପର୍ଯ୍ୟନ୍ତ ତିଆରି ହୋଇପାରି ନାହିଁ, ତଥାପି କେତେକ ନିର୍ଦ୍ଦିଷ୍ଟ ପ୍ରଶ୍ନ ପଚାରିଲେ କଥା କହି ତା'ର ଉତ୍ତର ଦେଇ ପାରୁଥିବା କେତେଗୁଡ଼ିଏ ଯନ୍ତ୍ର ମଣିଷ ତିଆରି ହୋଇ ସାରିଲେଣି । ଏବେ ତିଆରି ହୋଇଥିବା ଏହି ଧରଣର କେତୋଟି ଯନ୍ତ୍ର ମଣିଷ ତିନିଶହ ଚାରିଶହ ଶବ୍ଦ ଶିଖି କେବଳ କେତେକ ନିର୍ଦ୍ଦିଷ୍ଟ କଥା କହି ପାରୁଛନ୍ତି । ଭବିଷ୍ୟତରେ ଦଶହଜାର ବାରହଜାର ଶବ୍ଦ ଶିଖିପାରିବା ଭଳି ଯନ୍ତ୍ର

ମଣିଷଟିଏ ତିଆରି ହୋଇପାରିଲେ ତାହା ଠିକ୍ ମଣିଷ ଭଳି ସବୁ ପ୍ରକାର କଥା କହିପାରିବ । ଆଉ ଅଳ୍ପ ଦିନପରେ ଏ କ୍ଷେତ୍ରରେ ନିଶ୍ଚୟ ସଫଳ ହୋଇପାରିବେ ବୋଲି ବୈଜ୍ଞାନିକମାନେ ଆଶା କରୁଛନ୍ତି ।"

ଜିତୁ ଏହି ସମୟରେ ହଠାତ୍ କହିଲା—"ସତରେ, ବୈଜ୍ଞାନିକମାନେ କ'ଣ ନ କରିପାରୁଛନ୍ତି ?"

ଜିତୁ କଥା ନସରୁଣୁ ରୁବି କହିଲା—"ସତରେ ମ, ଯନ୍ତ୍ରଟାଏ ମଣିଷ ଭଳି ଏତେ କଥା ଶିଖିପାରୁଛି, ଏତେ କାମ କରିପାରୁଛି, ଏହା କ'ଣ କମ୍ ବଡ଼ କଥା !"

ରୁବି ପାଟିରୁ କଥା ଛଡ଼େଇ ନେଇ ଗୋପାଳ ବାବୁ କହିଲେ—"ଆମେରିକା, ରୁଷିଆ, ଜାପାନ, ଇଂଲଣ୍ଡ ଓ ଜର୍ମାନୀ ପ୍ରଭୃତି ଦେଶମାନଙ୍କରେ କଳକାରଖାନାଠାରୁ ଆରମ୍ଭ କରି ଘରେ ବାହାରେ ଯନ୍ତ୍ର ମଣିଷ କେଉଁ ସବୁ କାମ କରୁଛି, ସେ କଥା ଶୁଣିଲେ ତୁମେ କେବେ ବିଶ୍ୱାସ କରିପାରିବ ନାହିଁ ।"

ଜିତୁ କହିଲା—"ଆମକୁ ସେ ବିଷୟରେ ଟିକେ କୁହ, ମାମୁଁ ।"

ଯନ୍ତ୍ର ମଣିଷର ବିଭିନ୍ନ କାର୍ଯ୍ୟ

ଗୋପାଳ ବାବୁ କହିଲେ—"ହେଉ ମୁଁ ସେ କଥା କହୁଛି, ଟିକେ ଅପେକ୍ଷା କର ।" ଏତିକି କହି ସେ ପାଣି ଗ୍ଲାସେ ଆଣିବାକୁ ଜିତୁକୁ କହିଲେ । ଜିତୁ ସଙ୍ଗେ ସଙ୍ଗେ ଉଠିଯାଇ ପାଣି ଗ୍ଲାସେ ଆଣି ଚଟାପଟ୍ ପହଞ୍ଚାଇଦେଲା । ଗୋପାଳ ବାବୁ ପାଣି ପିଇସାରି ଆରମ୍ଭ କଲେ—"ଯନ୍ତ୍ର ମଣିଷର କାର୍ଯ୍ୟଦକ୍ଷତା ମଣିଷ ଠାରୁ ବେଶି ହୋଇଥିବାରୁ

ଏହାକୁ କଳକାରଖାନାରେ ଶ୍ରମିକ ଭାବେ ବ୍ୟବହାର କରାଯାଉଛି । ଆମେରିକାର ଗୋଟିଏ କାରଖାନାରେ ଦୁଇଟି ଯନ୍ତ୍ର ମଣିଷ କାମ କରୁଛନ୍ତି । ସେ ଦୁଇଟିଙ୍କ ମଧ୍ୟରୁ ପ୍ରତ୍ୟେକଟି ଶହେହଜାର ଲୋକଙ୍କ କାମଠାରୁ ବେଶି କାମ କରିପାରୁଛି । ଆହୁରି ମଧ୍ୟ ଆମେରିକାର କେତେକ କାରଖାନାରେ ଯନ୍ତ୍ର ମଣିଷ ଆଇସ୍‌କ୍ରିମ୍, ପାଉଁରୁଟି ଓ ଚକୋଲେଟ୍ ପ୍ରଭୃତି ତିଆରି କରୁଛି, ଫଟୋ ଷ୍ଟୁଡ଼ିଓରେ ଫଟୋ ଉଠାଉଛି । ବଡ଼ ବଡ଼ ଫାର୍ମମାନଙ୍କରେ ଗାଈ ଦୁହୁଁଛି । ବିଭିନ୍ନ ଅଫିସ ଓ ବ୍ୟାଙ୍କରେ ଦରୁଆନ ଭଳି ଜଗୁଆଳି କାମ କରୁଛି । ମଟର ଓ ବସ୍ ଗାଡ଼ିରେ




କଣ୍ଡକ୍ଟର କାମ କରୁଛି । ଡ୍ରାଇଭର ହୋଇ ରେଲଗାଡ଼ି ଚଳାଇ ପାରୁଛି । ଏହାଛଡ଼ା ଆମେରିକାର କେତେକ ଦୋକାନରେ ଯନ୍ତ୍ର ମଣିଷ ବିଭିନ୍ନ ପତ୍ର ତଥା ପାନ, ସିଗାରେଟ୍ ଓ ଚା' ପ୍ରଭୃତି ବିକାକିଣା କରୁଛି ।"

ଏହା ଶୁଣି ରବି ହଠାତ୍ ପଚାରି ଦେଲା—"ଯନ୍ତ୍ରଟା ଦୋକାନରେ କେମିତି ବିକାକିଣା କରିପାରୁଛି ?"

ଗୋପାଳ ବାବୁ କହିଲେ—"ତୁମେ ଭାବୁଛ କ'ଣ ଯନ୍ତ୍ର ମଣିଷ ଦୋକାନରେ ବସି ନିକିତି ଧରି ଜିନିଷ ପତ୍ର

ଓଜନ କରୁଛ ?...ତା' ନୁହେଁ ଦୋକାନରେ ବିଭିନ୍ନ ଦାମ୍‌ର ଜିନିଷ ସବୁ କାଚ ଆଲମିରା ଭଳି ଯନ୍ତ୍ର ଭିତରେ ଅଲଗା ଅଲଗା ରଖାଯାଇଛି । ପ୍ରତ୍ୟେକ ଜିନିଷ ତଳେ ଦାମ୍ ଲେଖାଯାଇଛି ଓ ସେଠାରେ ଗୋଟିଏ ଲେଖାଁ କଣା ଅଛି । ମନେକର ତୁମେ ଗୋଟିଏ ଜିନଷ କିଣିବାକୁ ଗଲ । ତା'ର ଦାମ୍ ସେହି ଜିନିଷ ତଳେ ଥିବା କଣାରେ ଗଳାଇ ଦେଇ ତା' ପାଖରେ ଥିବା ସୁଇଚ୍‌କୁ ଟିପି ଦେଲେ ଜିନିଷଟି ଆପେ ଆପେ ବାହାରି ଆସିବ ।"



ଏହା ଶୁଣି ବୁଢ଼ା ଅଜା କହିଲେ—"ତା' ହେଲେ ତ ଲୋକମାନେ କମ୍ ପଇସା ଗଳେଇ ବେଶି ଜିନିଷ ଠକେଇ ଦେଉଥିବେ ।"

ଗୋପାଳ ବାବୁ ହସିଲା ମୁହଁରେ କହିଲେ – "ନା, ସେଠାରେ କେବେ ଠକାଇ ହେବନି । ମନେକର ଗୋଟିଏ ଜିନିଷର ଦାମ୍ ପାଞ୍ଚଟଙ୍କା । ମାତ୍ର ତୁମେ ଦ'ଟଙ୍କିଆ ନୋଟ୍ ଖଣ୍ଡେ ଗଳେଇ ଦେଲେ ସେ ଜିନିଷ ମୋଟେ ବାହାରିବ ନି । କାରଣ, ତା' ଭିତରେ ଥିବା ଯନ୍ତ୍ର ମଣିଷର ଯାନ୍ତ୍ରିକ

ଦେହଲୁ ଆଗରୁ କଭିନ୍ନ ପ୍ରକାର ଟଙ୍କା, ପଇସାର ଆକାର ଓ ମୂଲ୍ୟ ବିଷୟରେ ଜଣେଇ ଦିଆଯାଇଛି । ଯାହା ଦ୍ୱାରା କି ତାହା ସବୁ ପ୍ରକାର ଟଙ୍କା ପଇସାକୁ ଭଲଭାବେ ଚିହ୍ନି ପାରୁଛି । ତେଣୁ ଗୋଟିଏ ଜିନିଷର ଉପଯୁକ୍ତ ମୂଲ୍ୟ ସେ କଣାରେ ନ ଗଳାଇଲେ ଜିନିଷ ଆଦୌ ବାହାରିବ ନାହିଁ ।"

ବୁଢ଼ା ଅଜା କହିଲେ—"ତେବେ ତ ପାଖରେ ରେଜା ଟଙ୍କା କି ପଇସା ନ ଥିଲେ ସେଭଳି ଦୋକାନରୁ କିଛି ଜିନିଷ କିଣି ହେବନି ?"

ଗୋପାଳ ବାବୁ କହିଲେ—"ଭଲ କଥାଟିଏ ପଚାରିଲ । ତେବେ ଶୁଣ, ସେହି ଦୋକାନର ଗୋଟିଏ ପାଖକୁ ଟଙ୍କା ଭଙ୍ଗାଇବା ଯନ୍ତ୍ରଟିଏ ମଧ୍ୟ ବସିଛି । ମନେକର ତୁମେ ପାଞ୍ଚ ଟଙ୍କାର ଜିନିଷ ଆଣିବାକୁ ଗଲ । କିନ୍ତୁ ତୁମ ପାଖରେ କୋଡ଼ିଏ ଟଙ୍କିଆ ନୋଟ ଖଣ୍ଡେ ଅଛି । ତେବେ ତୁମେ ସେଠି କୋଡ଼ିଏ ଟଙ୍କିଆ ନୋଟଟା ଗଳେଇ ଦେଇ ସୁଇଚ ଟିପିଲେ ଆପେ ଆପେ ରେଜା ଟଙ୍କା ବାହାରି ଆସିବ । ସେଠୁ ଟଙ୍କା ନେଇ ଜିନିଷ ରଖା ଯାଇ ଥିବା ଯନ୍ତ୍ରରେ ଗଳେଇ ଜିନିଷ ନେଇ ଘରକୁ ଯିବ । ଏହାଛଡ଼ା ଆମେରିକାର କେତେକ ଜାଗାରେ ଆଉ ଏକ ପ୍ରକାର ଯନ୍ତ୍ର ବସିଛି । ଯାହା କି ଜିନିଷ ଦେବା ସଙ୍ଗେ ସଙ୍ଗେ ଟଙ୍କା ମଧ୍ୟ ଭଙ୍ଗେଇ ଦେଉଛି । ମନେକର ତୁମେ ବାରଟଙ୍କା ଦାମ୍‌ର ଗୋଟିଏ କଲମ କିଣିବାକୁ ଗଲ । କିନ୍ତୁ ତୁମର କୋଡ଼ିଏ ଟଙ୍କିଆ ନୋଟ ଖଣ୍ଡେ ଅଛି । ତେବେ ତୁମେ ସେହି ବାରଟଙ୍କିଆ କଲମ ରଖାଯାଇଥିବା ଯନ୍ତ୍ରର କଣାରେ କୋଡ଼ିଏ ଟଙ୍କିଆ ନୋଟଟା ଗଳେଇ ଦେଲେ

କଲମ ଓ ଅବଶିଷ୍ଟ ଆଠ ଟଙ୍କା ବାହାରି ଆସିବ । ତୁମେ କଲମ ଓ ରେଜା ଟଙ୍କା ନେଇ ଘରକୁ ଯିବ ।"

ଜିତୁ କହିଲା—"ବାଃ, ଭାରି ମଜା କଥା ତ !

ଗୋପାଳ ବାବୁ କହିଲେ—"ଘରର ବାହାରେ ରହି ଯନ୍ତ୍ର ମଣିଷ କରୁଥିବା କାର୍ଯ୍ୟ କଥା ତ ଶୁଣିଲ । ଏହାଛଡ଼ା ଯନ୍ତ୍ର ମଣିଷ ଆମେରିକାର ଘରେ ଘରେ ଚାକର ଭଳି ଯେଉଁ ସବୁ କାମ କରି ଦେଉଛି, ସେ କଥା ଶୁଣିଲେ ତୁମ୍ଭେମାନେ ଆହୁରି ଆଶ୍ଚର୍ଯ୍ୟ ହୋ ଯିବ । ଯନ୍ତ୍ର ମଣିଷ ଘର ଭିତରେ ରହି ଅଇଁଠା ବାସନ ମାଜି ଦେଉଛି । ସାବୁନ ଦେଇ ଲୁଗା ସଫା କରୁଛି । ଧୂଆ ଲୁଗାକୁ ଶପୁଡ଼ି ଦେଇ ଦେଉଛି । ରୋଷେ ଘରେ ରହି ଭାତ, ଡାଲି ଓ ଶୁଖୁଆ ତରକାରୀ ପ୍ରଭୃତି ରାନ୍ଧି ଦେଉଛି । ଘର ଦୁଆର ଓଳେଇ ସଫା କରି ଦେଉଛି ।"

ଏହା ଶୁଣି ରୁବି କହିଲା—"ଭାରି ବଢ଼ିଆ ତ, ସେ ଦେଶର ଲୋକମାନଙ୍କୁ ଆମ ଏଠିକା ଭଳି ଏତେ ପରିଶ୍ରମ କରିବାକୁ ପଡ଼ୁ ନ ଥିବ ।"

ଗୋପାଳ ବାବୁ କହିଲେ—"ଖାଲି ସେତିକି ନୁହେଁ, ଆଜି କାଲି ଏମିତି କୃତ୍ରିମ ମସ୍ତିଷ୍କ ଥିବା ଯନ୍ତ୍ର ମଣିଷ ବାହାରିଲାଣି ଯେ ଯାହା କି ଡାକ୍ତର ଭଳି ରୋଗୀକୁ ପରୀକ୍ଷା କରି ରୋଗ ଚିହ୍ନି ପାରୁଛି । ରୋଗୀକୁ ଅପରେସନ୍ କରୁଛି ଓ ନର୍ସ ଭଳି ରୋଗୀର ସେବା କରୁଛି । ଏଇଭଳି ଯନ୍ତ୍ର ମଣିଷ ମଧ୍ୟ ମଣିଷ ସହିତ ଚେସ୍ ଓ ତାସ ଖେଳିପାରୁଛି । ବାହା ଘରେ ମଧ୍ୟସ୍ଥି କରୁଛି । ଏହାଛଡ଼ା ବହୁ ଜଟିଳ ଗଣିତ ପ୍ରଶ୍ନକୁ ଖୁବ୍ କମ୍ ସମୟ ଭିତରେ ସମାଧାନ କରି ଦେ ପାରୁଛି । ଏଥିପାଇଁ ଏଭଳି ଯନ୍ତ୍ର ମଣିଷ କେତେକ ଦେଶରେ ବହୁ ଅଫିସ ବ୍ୟାଙ୍କ-

ମାନଙ୍କରେ ରହି ହିସାବ ପତ୍ର କରୁଛି । ପିଲାଙ୍କ ପରୀକ୍ଷା ଖାତା ଦେଖି ନମ୍ବର ଦେଇପାରୁଛି । କବିମାନଙ୍କ ଭଳି ଏହା କବିତା ଲେଖି ପାରୁଛି । ଗୋଟିଏ ଭାଷାର ଲେଖାକୁ ଅନ୍ୟ ଭାଷାରେ ଅନୁବାଦ କରିପାରୁଛି । ଆହୁରି ମଧ୍ୟ କେତେକ ଦେଶରେ ଏହି ଯନ୍ତ୍ର ମଣିଷକୁ ଯୁଦ୍ଧରେ ସୈନିକ ଭାବେ ବ୍ୟବହାର କରିବାକୁ ବ୍ୟବସ୍ଥା କରାଯାଉଛି ।”

ବୁଢ଼ା ଅଜା କହିଲେ–“ଯେଉଁ ଦେଶରେ ଯନ୍ତ୍ର ମଣିଷ ସୈନିକ ଭାବରେ ଯୁଦ୍ଧ କରିବ, ସେ ଦେଶରେ ତ ମଣିଷ–ସୈନିକମାନେ ଆଉ ଯୁଦ୍ଧରେ ମରିବେ ନାହିଁ । ତା’ ଛଡ଼ା ଯନ୍ତ୍ର ମଣିଷର ବିଚକ୍ଷଣ ବୁଦ୍ଧି ଓ ବଳ ଯୋଗୁ ସେ ଦେଶ ନିଶ୍ଚୟ ଯୁଦ୍ଧରେ ଜୟଲାଭ କରିବ ।”

ଗୋପାଳ ବାବୁ ଏହା ଶୁଣି ହସି ହସି କହିଲେ– ଏହାକୁ ଏତେ ସରଳ ବୋଲି ଭାବୁଛ କାହିଁକି ? ଯନ୍ତ୍ର ମଣିଷ ଯେତେ ବଳବାନ୍ ଓ ବୁଦ୍ଧିମାନ୍ ହେଲେ ମଧ୍ୟ ତା’ର ନିଜର ମୌଳିକ ଚିନ୍ତା ଶକ୍ତି କିଛି ନାହିଁ । କୌଣସି କାର୍ଯ୍ୟର ଫଳାଫଳ କଥା ନ ଭାବି ତାହା ଅନ୍ଧ ଭାବରେ କେବଳ ନିର୍ଦ୍ଦେଶ ମାନି ଚଳେ । ତେଣୁ ଏହା ଯୁଦ୍ଧ କ୍ଷେତ୍ରରେ ସୈନିକ ହେଲେ ଆଦେଶ ପାଇବା ମାତ୍ରେ ଯେ କୌଣସି ଦେଶକୁ ଏପରିକି ସମଗ୍ର ପୃଥିବୀକୁ ମୁହୂର୍ତ୍ତକ ମଧ୍ୟରେ ଧ୍ୱଂସ କରିଦେଇ ପାରିବ । ସେଇଥି ପାଇଁ ତ ଏହାକୁ ଯୁଦ୍ଧ କ୍ଷେତ୍ରରେ ବ୍ୟବହାର ‘ନ’ କରିବାକୁ ଅନୁରୋଧ କରାଯାଉଛି ।”

ବୁଢ଼ା ଅଜା କହିଲେ–“ଆଁ, ଯନ୍ତ୍ରଟା ପୁଣି ପୃଥିବୀକୁ ଧ୍ୱଂସ କରିଦେବ ? ଏ ତ ଜଣେ ଚାକର ନିଜର ମାଲିକକୁ ନେଇ ତା’ ପାଦତଳେ ଖଟାଇବା କଥା ହେଲା ।”

ଗୋପାଳ ବାବୁ କହିଲେ—"ହଁ, ଠିକ୍ କହୁଛନ୍ତି ।

ଯନ୍ତ୍ର ମଣିଷର ଅଦ୍ଭୁତ ଶକ୍ତି ଓ କାର୍ଯ୍ୟ ଦକ୍ଷତା ଦେଖି ଯେ କୌଣସି ଲୋକ ଏହା ଭାବିବା ସ୍ୱାଭାବିକ । ମାତ୍ର ଏହାର ଭଲ ମନ୍ଦ ଗୁଣକୁ ବିଚାରକୁ ନେଇ ଠିକ୍ ବାଟରେ ବ୍ୟବହାର କରିପାରିଲେ ଏହା ଆମର ବିଶ୍ୱସ୍ତ ଚାକର ଭଳି କାମ କରିବ । ତା' ନହେଲେ ଏହା ମୁହୂର୍ତ୍ତକ ମଧ୍ୟରେ ଆମର ଧନଜୀବନ ସବୁକିଛି ଧ୍ୱଂସ କରିଦେବ । ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।"

ଯନ୍ତ୍ର ମଣିଷ ବି ଖାଦ୍ୟ ଗ୍ରହଣ କରେ ।

ବୁଢ଼ା ଅଜା କହିଲେ—"ମୁଁ ଗୋଟିଏକଥା ଭାବୁଛି । ମଣିଷ ଜନ୍ମପରେ ଛୋଟରୁ ବଡ଼ ହୋଇ ଶେଷରେ ବୁଢ଼ା ହୋଇ ମରିଯାଉଛି । ତେବେ କ'ଣ କାଳକ୍ରମେ ତୁମର ଯନ୍ତ୍ର ମଣିଷଟା କିଛିଦିନ ପରେ ଭାଙ୍ଗିଯାଇ ନଷ୍ଟ ହୋଇ ଯାଉନି ?"

ଗୋପାଳ ବାବୁ କହିଲେ—"ଭଲ କଥାଟିଏ କହିଲ, ମୁଁ ଏକଥା କହିବାକୁ ଭୁଲି ଯାଇଥିଲି । ତେବେ ଶୁଣ । ମଣିଷ ଖାଦ୍ୟ ଖାଇ ନିଜର ଶରୀର ବୃଦ୍ଧି କରିବା ସଙ୍ଗେ ସଙ୍ଗେ ବଞ୍ଚି ରହେ । ଠିକ୍ ସେହିପରି ଯନ୍ତ୍ର ମଣିଷଟିଏ ନିଜ ମନକୁ ମନ ଖାଦ୍ୟ ଗ୍ରହଣ ନ କଲେ ମଧ୍ୟ ଏହାର ଯାନ୍ତ୍ରିକ ଦେହରେ ଥିବା ଗୋଟିଏ ବାଟ ଦେଇ ବିଭିନ୍ନ

କୈବକଣିକା ଏହା ଭିତରକୁ ପୂରେଇ ଦିଆଯାଏ । ସେହି କୈବକଣିକା ସେଠାରେ ଥିବା ଏକ ମେସିନ୍ ଦ୍ୱାରା ପେଶି ହୋଇ ଏକ ପ୍ରକାର ତେଲ ବାହାରେ । ଯାହାକି କଲକବ୍‌ଜାରେ ତିଆରି ହୋଇଥିବା ଯନ୍ତ୍ର ମଣିଷର ବିଭିନ୍ନ ଅଂଶ ଅଙ୍ଗ ପ୍ରତ୍ୟଙ୍ଗମାନଙ୍କୁ ଘଷି ହୋଇ ନଷ୍ଟ ହେବାରୁ ରକ୍ଷା କରେ । ଏହାଛଡ଼ା କୈବକଣିକାଗୁଡ଼ିକ ପେଶି ହୋଇ ସେଥିରୁ ତେଲ ବାହାରିଯିବା ପରେ ଯେଉଁ ଅଦରକାରୀ ଖଦଡ଼ା ରହିଯାଏ । ତାହା ଯନ୍ତ୍ର ମଣିଷ ଦେହରେ ଥିବା ଅନ୍ୟ ବାଟ ଦେଇ ବାହାରକୁ ବାହାରି ଆସେ । ଏହି ପ୍ରକ୍ରିୟାକୁ ଯନ୍ତ୍ର ମଣିଷର ଖାଦ୍ୟଗ୍ରହଣ ଓ ମଳତ୍ୟାଗ ବୋଲି କହିଲେ ଭୁଲ ହେବ ନାହିଁ ।”

ମାମୁଁଙ୍କଠାରୁ କଥା ଶୁଣୁ ଶୁଣୁ ଜିତୁ ଭାବବିହ୍ୱଳ ହୋଇ କହି ପକାଇଲା—“ଏତ ବଡ଼ ମଜା କଥା !”

ଯନ୍ତ୍ର ମଣିଷ ବି ମୃତ୍ୟୁବରଣ କରେ ।

ଜିତୁ ପାଟିରୁ କଥା ଛଡ଼େଇ ନେଇ ଗୋପାଳ ବାବୁ କହିଲେ—“ଯନ୍ତ୍ରମଣିଷ ବି ମୃତ୍ୟୁବରଣ କରେ । ଏହା କିପରି ଘଟେ, ସେ କଥା କହୁଛି ଶୁଣ । ଯନ୍ତ୍ର ମଣିଷର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ କଲକବ୍‌ଜାରେ ତିଆରି ବୋଲି ତୁମେ ତ ଜାଣ । ଏହି ଅଙ୍ଗ ପ୍ରତ୍ୟଙ୍ଗଗୁଡ଼ିକ ବାରମ୍ବାର କାମ କରିବା ଦ୍ୱାରା କ୍ରମଶଃ କ୍ଷୟ ହେବାକୁ ଲାଗନ୍ତି ଏବଂ ଶେଷରେ ଖରାପ ହୋଇଯା'ନ୍ତି । ଯାହାଦ୍ୱାରା କି ବହୁଦିନ କାମକଲା

ପରେ ଯନ୍ତ୍ର ମଣିଷଟି ପୂର୍ବପୂର୍ବ ଅକାମୀ ହୋଇଯାଏ । ଏହାକୁ ଯନ୍ତ୍ର ମଣିଷର ମୃତ୍ୟୁ ଅବସ୍ଥା ବୋଲି କହିଲେ ଭୁଲ ରହିଲା କେଉଁଠି ?"

ଏହି ସମୟରେ ବୁଢ଼ା ଅଜା ପଚାରି ଦେଲେ—"ଆମ ଦେଶରେ କ'ଣ ଯନ୍ତ୍ର ମଣିଷ ତିଆରି ହୋଇ ନାହାନ୍ତି ?"

ଗୋପାଳ ବାବୁ କହିଲେ—"ଆଜି ପର୍ଯ୍ୟନ୍ତ ଆମ ଦେଶରେ ଯନ୍ତ୍ର ମଣିଷତିଆରି ହୋଇପାରି ନାହିଁ । ଏବେ ଏକ ଖବରରୁ ଜଣାଯାଏ ଯେ ବମ୍ବେର ଭାବା ଆଣବିକ ଗବେଷଣାଗାରର ବୈଜ୍ଞାନିକମାନେ ଯନ୍ତ୍ର ମଣିଷ ତିଆରି କରୁଛନ୍ତି । ୧୯୯୦ ମସିହାରେ ତାହାର ନିର୍ମାଣ କାର୍ଯ୍ୟ ଶେଷ ହେବ ବୋଲି ଆଶା କରାଯାଉଛି ।"

ଏତିକି କହି କହିବାର ଢଙ୍ଗ ବଦଳାଇ ଦେଇ ଗୋପାଳ ବାବୁ ପୁଣି କହିଲେ—"ବର୍ତ୍ତମାନ ପୃଥିବୀରେ ପ୍ରାୟ ପଚଶ ହଜାର ଯନ୍ତ୍ର ମଣିଷ ବିଭିନ୍ନ ଦେଶରେ କାମ କରୁଛନ୍ତି । ଦୁଇ ହଜାର ମସିହା ବେଳକୁ ଏମାନଙ୍କର ସଂଖ୍ୟା ପ୍ରାୟ ଶହେ କୋଡ଼ିଏ ହଜାରରୁ ଅଧିକ ହୋଇଯିବ ବୋଲି ଆଶା କରାଯାଉଛି । ସେତେବେଳେ ପ୍ରାୟ ଅଧିକାଂଶ ଦେଶରେ ଏହି ଯନ୍ତ୍ର ମଣିଷ ବିଭିନ୍ନ ପ୍ରକାର କରିବେ ।"

ବୁଢ଼ା ଅଜା କହିଲେ—"ବୈଜ୍ଞାନିକମାନେ ଯାହା କଲେଣି ସେତେବେଳେ ଏ ପୃଥିବୀ ରହିବ ତ ?"

ଏହି ସମୟରେ ବୁଢ଼ା ଅଜା ଗୋପାଳ ବାବୁଙ୍କୁ ଲକ୍ଷ୍ୟ କରି କହିଲେ – "ରାତି ଆସି ଏତେ ହେଲାଣି । ଜହ୍ନ ବୁଡ଼ିବାକୁ ବସିଲାଣି । ସଞ୍ଜବେଳୁ କ'ଣ ଟିକେ ଚାଁ' ଖାଇଥିଲ, ଭୋକ ହେବଣି, ଏବେ ଖାଇବା ଚାଲ ।"

ଏହାପରେ ଗୋପାଳ ବାବୁ ରୁବି ଜିତୁକୁ ଲକ୍ଷ୍ୟ କରି କହିଲେ—"ଆଜି ଏତେ ରାତି ହେଲାଣି । ଯାଆ, ଖାଇପିଇ ଶୋଇବ । କାଲି ପୁଣି ଆମେରିକା ବିଷୟରେ ଆହୁରି କେତେ ନୂଆ ନୂଆ କଥା କହିବି ।"

ଏକାବେଳକେ ସମସ୍ତେ ଗୋଟି ଗୋଟି ହୋଇ ଦାଣ୍ଡ·ମେଲାରୁ ଉଠି ଘଞ୍ଜା ଭିତରକୁ ଚାଲିଗଲେ ।"



